# ୟୁଲିୟା ଦୁନିନା

# ଆଲିଶା

033



ୟୁଲିୟା ଡ୍ରୁବିନା

# ଆଲିଶା

ଅଙ୍କନ - ଭେନିଆମିନ୍ କୋସ୍ତିସ୍ତିନ୍



ଅନୁବାଦ -
ସ୍ୱର୍ଣ୍ଣଲତା ପରିଡ଼ା



"ରାଦୁଗା" ପ୍ରକାଶନ
ମସ୍କୋ

Ю. Друнина
АЛИСКА
*На языке ория*

Yu. Drunina
**ALICE**
*In Oriya*


ସୋଭିଏତ୍ ୟୁନିଅନ୍‌ରେ ମୁଦ୍ରିତ

ମୁଖ୍ୟ ପରିବେଷକ : ନବଯୁଗ ଗ୍ରନ୍ଥାଳୟ, ବକ୍ସିବଜାର ରୋଡ, କଟକ
୭୫୩୦୦୧

ISBN 5-05-001939-7



୧୯୪୪ ମସିହା ଶରତ ଋତୁରେ ଏସ୍ତୋନିଆରେ ସେ ଘଟଣାଟି ଘଟିଥିଲା । ସୋଭିଏତ୍ ରୁଷିୟା ଓ ନାଜି ଜର୍ମାନୀ ମଧ୍ୟରେ ସେତେବେଳେ ଘମାଘୋଟ ଯୁଦ୍ଧ ଚାଲିଥାଏ ।

ସ୍ୱୟଂଚାଳିତ ବନ୍ଧୁକଧାରୀ ଏକ ସେନା-ଦଳର ଫିଲ୍ଡ ନର୍ସ ଭାବରେ ଆଗଉଥିବା ସୈନ୍ୟମାନଙ୍କ ସହିତ ମୁଁ ଯାତ୍ରା କରୁଥିଲି । ଆମ ଔଷଧପତ୍ର ଓ ଚିକିତ୍ସା ଯନ୍ତ୍ରପାତି ଥିବା ଗାଡ଼ିଟି ବହୁତ ପଛରେ କେଉଁଠି ଅଟକି ଯାଇଥିଲା । ମୋ ସହିତ ତା'ର ଯୋଗାଯୋଗ ନଥିଲା । ଏଣେ ମୋ ପାଖରେ ଥିବା ବ୍ୟାଣ୍ଡେଜ୍ ସବୁ ଏତେ ଶୀଘ୍ର

ଶେଷ ହୋଇ ଆସୁଥିଲା ଯେ , ମୋତେ ଭୟ ଲାଗୁଥାଏ । ଆମ ସୈନ୍ୟମାନଙ୍କର ପ୍ରତିଆକ୍ରମଣ ବେଳେ ବହୁତ ଲୋକ ଆହତ ହେଉଥିଲେ ।

ଦିନେ ଗୋଟିଏ ଗାଁକୁ ଉଦ୍ଧାର କରି ଟିକେ ଦମ୍ ନେଉଛୁ କି ନାହିଁ , ବୁଢ଼ୀଟିଏ ବ୍ୟସ୍ତ ହୋଇ ମୋ ପାଖରେ ଆସି ପହଞ୍ଚିଲା । ତା ହାଡ଼ୁଆ ହାତରେ ସେ ଅସନା ଧଳା କୁକୁଡ଼ାଟିଏ ଧରିଥାଏ । କୁକୁଡ଼ାଟି ଖୁବ୍ ଜୋରରେ ଚିତ୍କାର କରୁଥାଏ । ବୁଢ଼ୀଟି ରୁଷ୍ ଭାଷା ଜାଣି ନଥିଲା । କିନ୍ତୁ ସେ କ'ଣ କହିବାକୁ ଚାହେଁ ତାହା ସେ ତା'ର ହାବଭାବ ଦ୍ୱାରା ବୁଝାଇ ପାରୁଥିଲା । ବୋମା ମାଡ଼ରେ କୁକୁଡ଼ାଟିର ଗୋଡ଼ଟି ଭାଙ୍ଗି ଯାଇଥିଲା ।

ବୁଢ଼ୀଟି ନିଜ ହାବଭାବ ଦ୍ୱାରା ଅନୁରୋଧ କରୁଥିଲା ପକ୍ଷୀଟିକୁ ସାହାଯ୍ୟ କରିବାକୁ । ତା'ର ଅନୁରୋଧକୁ ମୁଁ ଯୁକ୍ତିହୀନ ବୋଲି ଭାବି ନଥିଲି । ମୁଁ ସେ ଗୋଷ୍ଠୀର ଲୋକଙ୍କ ମଧ୍ୟରେ ଜଣେ ନୁହେଁ , ଯେଉଁମାନେ ଭାବନ୍ତି କଷ୍ଟ ଭୋଗିବାଟା ହେଉଛି ମଣିଷର ଏକ ବିଶେଷ ଅଧିକାର ।

କିନ୍ତୁ ମୋ ଅନ୍ୟ କମ୍ରେଡ୍‌ମାନେ ଦେଖିଲେ କ'ଣ କହିବେ ?

ମୁଁ ବୁଢ଼ୀଟିକୁ ବୁଝାଇବାକୁ ଚେଷ୍ଟା କଲି । ସେ କିନ୍ତୁ ମୋ କଥା ନଶୁଣି ତା ଚିତ୍କାର କରୁଥିବା କୁକୁଡ଼ାଟିକୁ ନିରବରେ ମୋ ହାତ ଭିତରେ ଗୁଞ୍ଜିବାରେ ଲାଗିଥାଏ ।

ଏହା ମଧ୍ୟରେ କେତେକ କୌତୂହଳୀ ସୈନିକ ଆମ ଚାରିପଟେ ଘେରିଗଲେ । ହଠାତ୍ ଜଣେ ମଧ୍ୟବୟସ୍କ ସୈନିକ ବିଦ୍ରୂପରେ କହୁଥିବାର ମୁଁ ଶୁଣିବାକୁ ପାଇଲି :

“ ଏହି ପ୍ରାଣୀଟି ପ୍ରତି ତୋର ଏତେ ଅବହେଳା କାହିଁକି , ଝିଅ ? ତୋର କ'ଣ ହୃଦୟ ବୋଲି କିଛି ନାହିଁ ? ”

ଅନ୍ୟ ଜଣେ ଯୁବକ ତାଙ୍କୁ ସମର୍ଥନ କରି କହି ଉଠିଲା :

“ସହରର ଲୋକମାନେ ସମସ୍ତେ ଏକା ଭଳି । କିଛି ସେମାନେ ବୁଝନ୍ତି ନାହିଁ ।”

ତା'ପରେ ସମସ୍ତେ ସମସ୍ୱରରେ ମୋତେ ଦୋଷ ଦେବାରେ ଲାଗିଗଲେ, ମୋର ଦୟାମାୟା ନାହିଁ ବୋଲି କହିଲେ । ଆଉ ଯାହା କହିଲେ ସେ ସବୁ ମନେ ପକାଇବାକୁ ଏବେ ମୋର ଆଦୌ ଇଛା ହେଉନି ...

ଜଣେ କିଏ ଥଟ୍ଟାଳିଆ ସ୍ୱରରେ କହିଉଠିଲା, "ଆରେ ଖଣ୍ଡିଆ କୁକୁଡ଼ାଟାରେ ତ ବଢ଼ିଆ ଝୋଳ ହେବ ।" କିନ୍ତୁ ସମସ୍ତେ ତା ଆଡ଼କୁ ବୁଲିପଡ଼ି ଏମିତି ଚାହିଁଲେ ଯେ, ସେ ଚୁପ୍ ହୋଇଯାଇ ଛାନିଆରେ ଆଖିକୁ ମିଟିମିଟି କରିବାକୁ ଲାଗିଲା ।

ମୁଁ ମୋ ବ୍ୟାଗ୍‌ଟି ଖୋଲିଲି । କିଏ ଜଣେ ଦୁଇଟି କାଠି ଗୁଞ୍ଜି ମୋ ହାତକୁ ବଢ଼େଇଦେଲା । ମୁଁ ଡାକ୍ତରୀବିଦ୍ୟାର ସମସ୍ତ ନିୟମ ଅନୁଯାୟୀ କୁକୁଡ଼ାର ଗୋଡ଼ଟିକୁ ବାନ୍ଧିଲି ।

ମଣିଷପଣିଆର ଭଲ ନୀତି ଶିକ୍ଷାଟିଏ ସେଦିନ ରଣକ୍ଷେତ୍ରର ସୈନିକମାନେ ମୋତେ ଦେଇଥିଲେ । ଯୁଦ୍ଧ ଏମାନଙ୍କ ମନରୁ ଏହି ସବୁ କୋମଳ ଧାରଣାକୁ ନଷ୍ଟକରି ଦେବା କଥା, କିନ୍ତୁ ...

ସେଇଦିନଠାରୁ ମୁଁ ସବୁବେଳେ ସେହି ଶିକ୍ଷାଟିକୁ ମନେ ରଖି ଆସିଛି । ଆଲିଶା ସହିତ ମୋ ସାକ୍ଷାତ୍ ସମ୍ପର୍କରେ ଲେଖିବସିଲା ବେଳେ, ବର୍ତ୍ତମାନ ମଧ୍ୟ ମୋର ସେ ବିଷୟରେ ମନେ ପଡ଼ିଯାଉଛି । ସତରେ ଅବା କ'ଣ ତା କଥା ଲେଖିବା ଦରକାର ?

ଲେଖିଲାବେଳେ କାହିଁକି କେଜାଣି ମୋ ଆଖି ଆଗରେ ନାଚି ଯାଉଛି ସେହି ଯୁଦ୍ଧପୂର୍ଣ୍ଣ ଶରତ ଋତୁଟି । ତାହା ଏତେ ଦୂରେଇ ଯାଇଛି ନା କଳ୍ପନା କରି ହେଉନି । ମନେ ପଡ଼ି ଯାଉଛି ମୋର କାନ୍ଧରେ ରେଡ୍-କ୍ରସ୍ ବ୍ୟାଗ୍ ଝୁଲାଇଥିବା ସେହି ଅବାଗିଆ ଝିଅଟି ଓ ତା ହାତରେ ଯନ୍ତ୍ରଣାରେ ଛଟପଟ ହେଉଥିବା ସେହି କୁକୁଡ଼ାଟି କଥା । ଦୃଶ୍ୟଟା କେମିତି ବଡ଼ ବେବାଗିଆ ଲାଗୁଥାଏ ।

ଥରେ ଅଷ୍ଟମ ଶ୍ରେଣୀରେ ପଢ଼ୁଥିବା ମୋ ଝିଅ ଆସି କହିଲା କୁକୁରଟିଏ କେମିତି "ନିଜକୁ ନିଜେ ବିକ୍ରି କରିବାକୁ ଚେଷ୍ଟା କରୁଥିଲା" ।

ଏହି ଅଦ୍ଭୁତ ଜୀବଟିକୁ ମୋ ଝିଅ ଆଲ୍ୟୋନା ମସ୍କୋର "ଚଢ଼େଇ ବଜାର"ରେ ଭେଟିଥିଲା । ସେଠାରେ ସବୁପ୍ରକାରର ଗୃହପାଳିତ ପଶୁପକ୍ଷୀ, ଯଥା – ମାଛ, ଗିନିପିଗ୍ ଓ କୁକୁର ଇତ୍ୟାଦି ବିକ୍ରି ହୁଅନ୍ତି । ସେ ପ୍ରତ୍ୟେକ ରବିବାର ସେଠାକୁ ଯାଉଥିଲା ।

କୁକୁର ବିକାଳୀମାନେ ସେମାନଙ୍କ କୁକୁରକୁ ଧରି ଧାଡ଼ି ଧାଡ଼ି ହୋଇ ଉଚ୍ଚ ପଥର ବେଢ଼ା ପାଖରେ ବସିଥିଲେ । ଏଭଳି ଏକ ଅନଭ୍ୟସ୍ତ ପରିସ୍ଥିତିରେ କୁକୁରମାନେ ହତୋତ୍ସାହ ହୋଇ, ପ୍ରତି ଆଗନ୍ତୁକ ପାଖଦେଇ ଚାଲି ଗଲାବେଳେ ନିଜକୁ ହୁଏତ ଠକିଲା ଭଳି ଭାବି ବ୍ୟତିବ୍ୟସ୍ତ ହୋଇ ଭୁକି ଉଠୁଥିଲେ । ପ୍ରକୃତରେ ସେମାନଙ୍କ ଖାଉନ୍ଦମାନେ ମଧ୍ୟ ନ ଦେଖିଲାଭଳି ସେମାନଙ୍କୁ ଟେହି ଦେଉଥିଲେ । ଯେମିତି ବହୁପୂର୍ବେ ଜିପ୍‌ସିମାନେ ଟେହି ଦେଉଥିଲେ ତାଙ୍କ ଘୋଡ଼ାମାନଙ୍କୁ, କଥାରେ ଅଛି – କୁକୁର ଯେତେ ବେଶୀ ରାଗୀ ହେବ, ସେତେ ବେଶୀ ଦାମ୍‌ରେ ବିକ୍ରି ହେବ । କାରଣ, ରାଗୀ କୁକୁର ଘର ଭଲ ଜଗେ ।

ପଥର ବେଢ଼ାର ଆରପଟରେ ବସି ରୋଗା, ଅପରିଚ୍ଛନ୍ନିଆ ଆଲ୍‌ସେସିଆନ୍ କୁକୁରଟିଏ ଅନ୍ୟ କୁକୁରମାନଙ୍କ ଆଡ଼କୁ ଚାହୁଁଥିଲା । ତା'ର ହିଂସା ହେଉଥିଲା ଦେଖି ଯେ, କେମିତି ସେମାନେ ଗୋଟିକ ପରେ ଗୋଟିଏ ନୂଆ ଖାଉନ୍ଦମାନଙ୍କ ସହିତ ଚାଲି ଯାଉଛନ୍ତି । ତା'ର ଶୋକାତୁର ଆଖିଦୁଇଟି ଏବଂ ଆଶାହୀନ ଭାବେ ହଲୁଥିବା ଲାଙ୍ଗୁଡ଼ଟି ଅସ୍ଥିର ହୋଇ ସତେ ଯେମିତି ଖାଲି କହୁ ନଥିଲା, ବରଂ ଚିତ୍‌କାର କରୁଥିଲା, "ଅନୁରୋଧ କରୁଛି, ଦୟାକରି ମତେ ବି ସାଙ୍ଗରେ ନିଅନ୍ତୁ !"

କିନ୍ତୁ ମୂଲ୍ୟହୀନ ଏହି କୁକୁରଟିକୁ ନେବା ପାଇଁ ବଜାରରେ କେହି ଆଗ୍ରହୀ ନଥିଲେ । କୁକୁରଟି ନିଜକୁ ନିଜେ ବିକ୍ରି କରିବା ଅଥବା ନିଜକୁ ନିଜେ ସମର୍ପି ଦେବା, କେମିତି ଏକ ଅଦ୍ଭୁତ, ସନ୍ଦେହଜନକ ବ୍ୟାପାର ବୋଲି ମନେ ହେଉଥିଲା । କୁକୁରଟି ଯେ ଆଲ୍‌ସେସିଆନ୍ ଜାତିର, ଏଥିରେ ହୁଏତ ସନ୍ଦେହ ଥିଲା । ତେବେ କିଏ କହିବ ଯେ, ଏହା ସତରେ ଆଲ୍‌ସେସିଆନ୍ କୁକୁର କି ନୁହେଁ ।

ଆଲ୍ୟୋନା ଇତିମଧ୍ୟରେ ତିନୋଟି ରବିବାର ବଜାରକୁ ଆସିଥିଲା ଏବଂ ପ୍ରତ୍ୟେକ ଥର ବିଗ୍ୱରୀଟିକୁ ସେଇ ଜାଗାଟିରେ , ପଥର ବେଢ଼ା ପାଖରେ ବସିଥିବାର ଦେଖିଥିଲା । ଆଖି ଦୁଇଟି ତା'ର ପ୍ରତିଥର ଭଳି ଆଶାହୀନ ଭାବେ ଗ୍ରହିଁ ରହିଥାଏ । ପଞ୍ଜରା ହାଡ଼ସବୁ ବାହାରି ପଡ଼ିଥାଏ ...

ଏଘଟଣାଟି ସମ୍ପର୍କରେ ଶୁଣିଲା ପରେ , ଆମେ ପରିବାରର ସମସ୍ତେ ଠିକ୍ କଲୁ କୁକୁରଟି ଯେଉଁ ଜାତିର ହେଉ ପଛେ ପାଳିବୁ । ଏପରିକି ଦୋମିଶା ହେଲେ ବି କିଛି ଯାଏ ଆସେ ନା ।

ତା'ପର ରବିବାର ଦିନ ଆମେ ଚଢ଼େଇ ବଜାରରେ ଲୋକ ଓ ପଶୁମାନଙ୍କ ଭିଡ଼ ମଧ୍ୟରେ ପହଞ୍ଚିଗଲୁ । ସେଠି ଏତେ ଗୋଳଚହଳ , ଭେଉ ଭେଉ , କିଚିର ମିଚିର ଶବ୍ଦ , ଯାହାକୁ କି ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଆଖି ଦୁଇଟା ମୋର ଖାଲି ଦୂରକୁ ଦୂରକୁ ମେଲିଯାଉଥିଲା ।

ଫିତାରେ ବନ୍ଧାହୋଇ ଟଣାଟଣି , ଭେଉ ଭେଉ ହେଉଥିବା କୁକୁରମାନଙ୍କ ଭିଡ଼ ଭିତରୁ , ବରଫ ଉପରେ ଚେନ୍‌ରେ ବନ୍ଧା ବିଲେଇ ଭଳି ଛୋଟ ବାଲିଆ ରଙ୍ଗର ଜୀବଟିକୁ ଦେଖିଲି । ଜୀବଟି ହତବୁଦ୍ଧି ହୋଇ ଡରିଲା ଭଳି ଦିଶୁଥିଲା । ବଡ଼ ବଡ଼ ଚମକୁଥିବା ହଳଦିଆ ଆଖି , ଶକ୍ତ ଶରୀର , ରୁମରୁମିଆ ଲାଞ୍ଜ ଓ ପତଳା ପତଳା ଗୋଡ଼ସବୁ ତା'ର । ପଛ ଗୋଡ଼ ଦୁଇଟି 'X' ଭଳି ଛନ୍ଦି ହୋଇ ରହିଥିଲା ।

ବେକରେ ତା'ର ଘର ତିଆରି ବେକବନ୍ଧା ଚେନ୍‌ଟିଏ ଲାଗିଥିଲା । ପିଲାଟିଏ ଚେନ୍‌ଟିକୁ ଧରି ଭୟରେ ଛିଡ଼ା ହୋଇଥିଲା । ଯେତେଦୂର ସମ୍ଭବ ଘରୁ ଏହି ଜୀବଟିକୁ ବାହାର କରିଦେବା ପାଇଁ ତାକୁ ଧମକ ଦିଆ ଯାଇଥିଲା ।

ମୁଁ ଜୀବଟି ପାଖକୁ ଯାଇ , ତା ପାଖରେ ବସି ତାକୁ ଆଉଁସି ଦେଲି । ସେ ତା କାନ ଦୁଇଟିକୁ ଛିଡ଼ା କରି ଦେଲା । "ସାବଧାନ , କାମୁଡ଼ିଦେବ" , ତା ମାଲିକ ପିଲାଟି ପାଟିକରି ଉଠିଲା । କିନ୍ତୁ ସେତେବେଳକୁ ଜୀବଟିକୁ ମୁଁ ହାତ ମୁଠାରେ ଧରି ସାରିଥିଲି । ତା'ର ଛାତିଟା ଖୁବ୍ ଜୋରରେ ଧଡ଼ପଡ଼ ହେଉଥିଲା

ଓ ଦେହଟା ଅସମ୍ଭବ ଭାବେ ଥରୁଥିଲା । କି ଆଶ୍ଚର୍ଯ୍ୟ, ବଣୁଆ ପଶୁଟାର ପୁଣି ଏଠି ଏତେ ଭୟ !

ମୁଁ କିନ୍ତୁ ତାକୁ ବଣୁଆ ପଶୁ ବୋଲି ଭାବି ପାରିଲି ନାହିଁ । ସେ ଖୁବ୍ ଦୁର୍ବଳ ଆଉ ଭୟାର୍ତ୍ତ ଜଣା ଯାଉଥିଲା । ପ୍ରଥମେ ମୁଁ ତାକୁ କୁକୁର ଛୁଆ ବୋଲି ଭାବିଥିଲି । ପରେ ଆମେ ଆବିଷ୍କାର କଲୁ ଯେ, ସେ ଷ୍ଟେପୀ ଅଞ୍ଚଳର 'କର୍‌ସାକ୍' ଜାତିର ବଡ଼ କୋକିଶିଆଳୀଟିଏ ।

ବିଶ୍ୱକୋଷ ବହିରେ ସେମାନଙ୍କ ବିଷୟରେ କୁହାଯାଇଛି ଯେ, "କର୍‌ସାକ୍‌ମାନେ ସାଧାରଣ କୋକିଶିଆଳୀ ଭଳି ଦେଖିବାକୁ, କିନ୍ତୁ ଲମ୍ବରେ ସେମାନଙ୍କଠାରୁ ଛୋଟ । ଦେହର ଲମ୍ବ ୫୦-୬୦ ସେଣ୍ଟିମିଟର, ଲାଞ୍ଜ ୨୫-୩୫ ସେଣ୍ଟିମିଟର) ... । ଏମାନେ ସାଧାରଣତଃ ଏସିଆ ଓ ଦକ୍ଷିଣ-ପୂର୍ବ ୟୁରୋପ୍‌ର ମରୁଭୂମି ଏବଂ ଅର୍ଦ୍ଧ ମରୁଭୂମି ଅଞ୍ଚଳରେ ଦେଖିବାକୁ ମିଳନ୍ତି । ସୋଭିଏତ୍ ୟୁନିଅନ୍‌ରେ ଉତ୍ତର କକେସସ୍‌ରୁ ନେଇ ବୈକାଲ୍ ହ୍ରଦ ଅଞ୍ଚଳ ପର୍ଯ୍ୟନ୍ତ, ଉତ୍ତରରେ ୫୦° ଅକ୍ଷରେଖା ଯାଏ ଏମାନେ ମିଳିଥାନ୍ତି । ଏହି ଜାତୀୟ କୋକିଶିଆଳୀ ମୂଷା, ଚୁଚୁନ୍ଦ୍ରା ଆଦିଙ୍କୁ ଲୋପ କରିବା କାମରେ ଲାଗି ପାରନ୍ତି ।"

ଏଭଳି ଏକ ବଡ଼ ଉପକାରୀ ଜୀବକୁ ମଣିଷ ସମାଜ କୃତଜ୍ଞତା ଜ୍ଞାପନ କରିବା ବଦଳରେ ନିଷ୍ଠୁର ଭାବେ ଧ୍ୱଂସ କରିବାରେ ଲାଗିଛି । ଦୁଃଖର କଥା ଯେ, ବିଶ୍ୱକୋଷରେ କାଳେ ଲେଖା ଅଛି, "ଏହାର ଚମଡ଼ା ଖୁବ୍ ମୂଲ୍ୟବାନ ।"

ସେ ଯାହାହେଉ କୋକିଶିଆଳୀଟି ସେତେବେଳକୁ ମୋ ହାତ ମୁଠାରେ ଥିଲା, ଆଉ ଭୟଭୀତ ବ୍ୟବସାୟୀଟିର ହାତରେ ଦଶଟି ମୁଦ୍ରା ଥିଲା । ଦାମ୍ ତ କାହିଁ କିଛି ବେଶୀ ନେଲାନି !

ମୁଁ ଯେ ଏତେ ବଡ଼ ଦାୟିତ୍ୱ ମୁଣ୍ଡେଇବାକୁ ଯାଉଛି ସେ ବିଷୟରେ ନିଜକୁ ନିଜେ ଠିକ୍ କରି ସାରିଥିଲି । ତାକୁ ରଖିବା ଖୁଆଇବାର ଅସୁବିଧା କଥା ମୁଁ କହୁନି । ସେସବୁ ଅସୁବିଧା ତ ହଠାତ୍ ଛତୁ ଭଳି ଫୁଟି ଉଠିବ । କଥା ହେଲା ଯେ, ତୁମେ ଏକ ବଣୁଆ ପଶୁକୁ ନେଇ ସଭ୍ୟ ସମାଜରେ ରଖିବ, ତାହା ପୁଣି

ସମ୍ପୂର୍ଣ୍ଣ ସ୍ୱାଧୀନ ଭାବେ, ଅର୍ଥାତ୍ ପିଞ୍ଜରାରେ ନୁହେଁ । ମୁଁ ନିଜେ ମୁଣ୍ଡାଉଥିବା ଦାୟିତ୍ୱର ତିକ୍ତ ଅନୁଭୂତି କଥା କହୁନି, ଯିଏକି ଦିନରାତି ଶାନ୍ତିରେ ବସେଇ ଉଠେଇ ଦେବନି । କଥାରେ ଅଛି, "ତୁ ଯାହାକୁ ମୁଣ୍ଡେଇଛୁ, ତା'ର ଭଲ ମନ୍ଦ ତୁ ହିଁ ବୁଝିବୁ ... ।"

ସବୁଠାରୁ ଖରାପ କଥା ହେଲା, ସାଧାରଣତଃ ବଣୁଆ ପଶୁମାନଙ୍କ ସହିତ ଆମ ସମ୍ପର୍କର ଶେଷ ପରିଣତି ଦୁଃଖଦାୟକ ହୋଇଥାଏ । ଯିଏ ପଶୁଜଗତର ନିୟମ ଭଙ୍ଗ କରେ, ପଶୁଜାତି ତା'ର ପ୍ରତିଶୋଧ ନେବାକୁ ଭୁଲେନି ।

ମୁଁ ପିଲାଟି ପାଖରୁ ପଶୁଟିର ନାଁ କ'ଣ, କେଉଁଠୁ ସେ ଆସିଛି, କେଉଁଠି ଥିଲା, କ'ଣ ଖାଉଥିଲା ଇତ୍ୟାଦି ବିଷୟରେ ପଚାରିବା ପାଇଁ ଚାହୁଁଥିଲି । କାରଣ ମୁଁ ତ ଆଉ ତାକୁ ଠେକୁଆ କି ମୂଷା ଖାଇବାକୁ ଦେଇ ନଥାନ୍ତି । ଠିକ୍ ଏହି ସମୟରେ ମୋ ଝିଅ ଆଲ୍ୟୋନା କେଉଁଠିଥିଲା ବିଜୁଳି ଭଳି ସେ କୁକୁରଟିକୁ ଧରି ପହଞ୍ଚିଲା । ଆମେ ପ୍ରକୃତରେ ସେଇ କୁକୁର ପାଇଁ ବଜାରକୁ ଆସିଥିଲୁ । ସତରେ ସେ ଥିଲା ଗୋଟିଏ ଆଲ୍‌ସେସିଆନ୍ ଜାତିର କୁକୁର । ଖୁବ୍ ଧୀରସ୍ଥିର, ଅସହାୟ ଦୃଷ୍ଟିରେ ସେ ଚାହୁଁଥାଏ । ଶେଷକୁ ତାକୁ "କିଣିବା" ପାଇଁ ଜଣେ କ୍ରେତା ମିଳି ଯାଇଛି ବୋଲି ସେ ବହୁତ ଖୁସି ଥିଲା । ଝିଅ ପାଖକୁ ଲାଗି, ଠିକ୍ ତା ପଛେ ପଛେ ସେ ଚାଲୁଥିଲା । ଆମେ ସେଇଠି ତା ନାଁ ରଖିଲୁ ତିଖନ୍ ବା ତିଶ୍‌କା, ଆଉ କୋକିଶିଆଳୀର ନାଁ ରଖାଗଲା ଆଲିଶା ।

ଏହିସବୁ ଘଟଣା ଘଟିବା ସମୟରେ ଆଲିଶାର ପୂର୍ବ ଖାଉନ୍ଦଟି କେଉଁ ଆଡ଼େ ଉଭାନ୍ ହୋଇଯାଇଥିଲା ... ।

ଆମେ ତେଣୁ ଜାଣି ପାରିଲୁ ନାହିଁ, କେଉଁଠୁ ସେ ଆସିଲା, କେମିତି ସେ ମସ୍କୋରେ ପହଞ୍ଚିଲା । ହୁଏତ ତା'ର ଲମ୍ବ ଲମ୍ବ ସରୁ ପାଦରେ ଚାଲି ଚାଲି କେଉଁ ଏକ ଅଜଣା ଅଶୁଣା ରାଇଜରୁ ପିଲାଙ୍କ ପରୀକାହାଣୀ ଭଳି ସେ ଆସି ପହଞ୍ଚିଥିଲା ... ।

ମୁଁ ଲୋକ ଗହଳି ଭିତରେ ଆଲିଶାକୁ ଜାବୁଡ଼ି ଧରି ଆଗେଇଲା ବେଳେ ଲୋକେ

ଆମକୁ ବଡ଼ ବଡ଼ ଆଖିରେ ଚାହୁଁଥିବାର ଦେଖିଲି । କେଉଁଠୁ ଝଗଡ଼ୀ ଝିଅଟିଏ ଆସି ମୋ ଚାରିପଟେ ନୁଙ୍ଗୁର ପୁଙ୍ଗୁର ହୋଇ ବାରମ୍ବାର ପଚାରିବାକୁ ଲାଗିଲା, "ମାଉସୀ, ମାଉସୀ ମ, ଏଟିକୁ କାହିଁକି କିଣିଲ ? କୋଟ୍‌ର କଲର୍ କରିବା ପାଇଁ ନାଁ କ'ଣ ?"

ଆମେ ଘରକୁ ଆସିଲା ପରେ, ଆଲ୍ୟୋନା କୁକୁଡ଼ାର ଖଣ୍ଡେ ଗୋଡ଼ କାଛ ଆଲମାରୀ ତଳକୁ ପକାଇ ଦେଲା । ଆମେ ଅବଶ୍ୟ ସେଯାଏ ଆଲିଶାର ରୁଚି ବିଷୟରେ କିଛି ଜାଣିନଥିଲୁ । କିନ୍ତୁ ଆମେ ନିଶ୍ଚିତ ଥିଲୁ ଯେ, ସେ ଅନ୍ତତଃ ଶାକାହାରୀ ନୁହଁ ।

ସଙ୍ଗେ ସଙ୍ଗେ ହାଡ଼ ଚୋବାଇବାର ଶବ୍ଦ ଆମେ ଶୁଣିବାକୁ ପାଇଲୁ । ମୋ ଝିଅ ଆଲମାରୀ ତଳକୁ ଚାହିଁଲା । ଚୋବାଇବା ଶବ୍ଦଟା ହଠାତ୍ ଖଣ୍ଡିକାଶ ମାରିଲା ଭଳି ଶବ୍ଦରେ ପରିଣତ ହେଲା । ଆମେ ଭୟ ପାଇଗଲୁ ଯେ, ହୁଏତ ଆଲିଶା ତଣ୍ଟିରେ କଣ୍ଟା ଲାଗି ଯାଇଛି ବୋଲି । କିନ୍ତୁ, ପରେ ଜାଣିବାକୁ ପାଇଲୁ ଯେ, କାଶିବା କର୍‌ସାକ୍ ଜାତୀୟ କୋକିଶିଆଳୀଙ୍କ ମଧ୍ୟମ ପର୍ଯ୍ୟାୟର ରାଗ ପ୍ରକାଶ କରିବାର ଏକ ଲକ୍ଷଣ ।

ରାଗ ପ୍ରକାଶ କରିବାର ଆଉ ଗୋଟିଏ ଉପାୟ ମଧ୍ୟ ଆଲିଶା ଦେଖାଇଥିଲା, ଘର ଭିତରକୁ ପୁଷି ବିଲେଇ ଯେତେବେଳେ ପଶି ଆସିଲା । ଆମ ପୁଷିର ମିଜାଜ ଖୁବ୍ ଖରାପ ହୋଇ ରୁମସବୁ ଟାଙ୍କୁରି ଉଠିଲା ଓ ସେ କ'ଣ କରିବ ଠିକ୍ କରି ପାରିଲା ନାହିଁ । ପୁଷିକୁ ବଣୁଆ ପଶୁର ଗନ୍ଧ ବଡ଼ ବିଚଳିତ କରୁଥିଲା ।

ଆଲିଶା ଆଲମାରୀ ତଳୁ ବାହାରି ଆସି କୁକୁର ଭୁକିଲା ଭଳି କେମିତି ଗୋଟାଏ ଶବ୍ଦ କଲା । ତା'ର ଏଭଳି ଭୁକିବା ଅର୍ଥ ହେଲା ସେ ରାଗରେ ଅସମ୍ଭାଳ ହୋଇପଡ଼ିଛି ।

ପୁଷି ରାଗିମାଗି ଖିଙ୍କାରି ଉଠି, ଓଟଙ୍କ ଭଳି ତା ପିଠିଟାକୁ ଟେକି ଦେଇଛି । ମୁଁ ତାକୁ ଉଠାଇ ନେଇ ଘର ବାହାରକୁ ବାହାରି ଆସିଲି ।

ଆମେ ଯେତେବେଳେ ଆଲିଶା ଓ ଟିଖନ୍ ମଧ୍ୟରେ ପରିଚୟ କରାଇଥିଲୁ,

ଆଲିଶା ସେହିଭଳି ଭୁକି ଉଠି ତା'ର ସ୍ୱାଗତ ଜଣେଇ ଥିଲା । ବଜାରରୁ ସେମାନଙ୍କୁ ଆଣିଲାବେଳେ ବ୍ୟସ୍ତତା ଭିତରେ ଦୁହେଁ ଦୁହିଁଙ୍କୁ ଭଲ ଭାବରେ ଦେଖି ପାରି ନଥିଲେ । ଘର ଭିତରେ ବୁଲାବୁଲିର ସୁବିଧା ପାଇ, ନିଜକୁ ଟିକିଏ ଅଭ୍ୟସ୍ତ କଲାପରେ, ଆଲିଶା ନିଜକୁ ମାଲିକାଣୀ ବୋଲି ଅନୁଭବ କରୁଥିଲା । ବିଗ୍ରା ତିଖନ୍ ଆଶ୍ଚର୍ଯ୍ୟ ହୋଇ ଏହି କୁନି ନିର୍ଲଜ୍ଜ ପଶୁଟି ଆଡ଼କୁ ଚାହିଁଥିଲା, ଯିଏକି ତାକୁ ଦେଖି ଜୋର୍‌ରେ ଭୁକିବାରେ ଲାଗିଥିଲା । ସେ ହୁଏତ ତା ଥାବାରେ ଆଲିଶାକୁ ଆମ୍ପୁଡ଼ି ପକାଇଥାନ୍ତା, କିନ୍ତୁ ତା ପୂର୍ବରୁ କୁକୁରଟିକୁ ନେଇ ଯିବାକୁ ହେଲା ସେଠାରୁ । ଫଳରେ ଏଥର ପରିଚୟଟା ଠିକ୍ ଭାବରେ ହେଲାନି ।

ତା ଶତ୍ରୁମାନଙ୍କର ଉଦ୍ଦେଶ୍ୟକୁ ବ୍ୟର୍ଥ କରି ଦେଇଥିବାରୁ ଆଲିଶା ନିଜକୁ "ବିଜୟିନୀ" ଭାବି ନେଲା । ଘରେ ଥିବା ପ୍ରତ୍ୟେକ ଜିନିଷ : ଚେୟାର, ସୋଫା, ଟେବୁଲ ଗୋଡ଼ ଇତ୍ୟାଦିକୁ ସେ ଶୁଙ୍ଘିବାରେ ଲାଗିଲା । ତାପରେ ସେ ଝରକା ପାଖରେ ପଡ଼ିଥିବା ଚେୟାର ଉପରକୁ ଡେଇଁପଡ଼ି, ଝରକା ପିଣ୍ଡିରେ ଆଗଗୋଡ଼ ଦୁଇଟିରେ ଭରାଦେଇ ଖୁବ୍ ଆଗ୍ରହର ସହ ବରଫରେ ଭରା ସହରର ପଡ଼ିଆକୁ ଦେଖିବାରେ ଲାଗିଲା । ଏହା ପରେ ଅନେକ ଦିନ ଧରି ସେ ଏହିଭଳି ବ୍ୟବହାର ଦେଖାଇଥିଲା । ଝରକା ବାହାରେ ସ୍ୱାଧୀନତା ରହିଛି ବୋଲି ସେ ହୁଏତ ହୃଦୟଙ୍ଗମ କରି ପାରିଥିଲା ...।

ସେଦିନ ମୁଁ ଗୋଟିଏ ଗାଡ଼ୁଆ ଛୋଟ ଚିନାମାଟିର ଆସ୍‌ଟ୍ରେରେ ସୁପ୍ ଢାଳି ଆଲିଶାକୁ ଦେଲି । ପ୍ରଥମେ ସେ ସୁପ୍‌କୁ ଶୁଙ୍ଘିଲା । ବ୍ୟବହାର ଦ୍ୱାରା ହୁଏତ ତା ଘୃଣା ପ୍ରକାଶ କରିବାକୁ ଚେଷ୍ଟା କରୁଥିଲା । ଆସ୍‌ଟ୍ରେଟି ଉପରେ ବସିପଡ଼ି, ପ୍ଲେଟ୍ ଭିତରକୁ ଲକ୍ଷ କରି ଏକ କରିବାରେ ଲାଗିଲା । ଆମେ ହତବୁଦ୍ଧି ହୋଇ ଯାଇଥିଲୁ – ଏ କି ଢଙ୍ଗରେ ବାବା !

ପରେ ମୁଁ ଜାଣିବାକୁ ପାଇଲି ଯେ, ସ୍ୱାଧୀନ ଭାବେ ବୁଲିଲା ବେଳେ କୋକିଶିଆଲୀମାନେ ଏହିଭଳି ତାଙ୍କ ଜିନିଷପତ୍ରକୁ ଚିହ୍ନାଇ ଥାଆନ୍ତି । ପ୍ରଥମେ ଗାତ ଖୋଳି ସେସବୁ ତା ଭିତରେ ଭରିଦିଅନ୍ତି । ଏଠି କିନ୍ତୁ ମାଟି ନଥିବାରୁ ତା

ଖାଦ୍ୟକୁ ଏହିଭାବେ ଚିହ୍ନେଇ ଦେଲା । ଏହା ଥିଲା ତା'ର ଏକ ପ୍ରବୃତ୍ତି ।

ମୁଁ ପ୍ରଥମେ ସନ୍ଦେହ କରୁଥିଲି ଯେ, ହୁଏତ ଏକ ଅଦ୍ଭୁତ ମଜା ଦେଖାଇବା ପାଇଁ ସେ ଏସବୁ କରୁଛି । ଚଗଲୀ ଆଲିଶା ଏହିଭଳି 'ରୁମ୍‌ପ୍ଲେଟ୍' ଖେଳ ଅନେକଥର ଦେଖାଉଥିଲା, ଯେତେବେଳେ ତାକୁ ଖାଦ୍ୟ ସୁଆଦିଆ ଲାଗୁନଥିଲା ।

ରାତି ହେଲାକ୍ଷଣି ଆଲିଶା ବେଶ୍ ଚଞ୍ଚଳ ହୋଇ ଉଠୁଥିଲା । ଗୁଣ୍ଡୁଚିମୂଷା ଭଳି ଘର ସାରା, ଚେୟାର ଉପରକୁ, ଟେବୁଲ ତଳକୁ ଡେଇଁ ବୁଲୁଥିଲା । କୋକିଶିଆଳୀମାନେ ଅବଶ୍ୟ ରାତିରେ ବୁଲିବା ପଶୁ । ଆମେ ଦିନରେ କାମ କରିବା ଲୋକ । ରାତିରେ ଆମର ବିଶ୍ରାମ ଦରକାର । ତେଣୁ ଆମେ ଆଲିଶାକୁ ଗାଧୁଆଘରେ ବନ୍ଦକରି ରଖିବାକୁ ଠିକ୍ କଲୁ । ହେଲେ କଥାକୁ କାର୍ଯ୍ୟରେ ପରିଣତ କରିବା ଏତେ ସହଜ ନଥିଲା ।

ସେ ଦିନ ସାରା ଖାଇବା ଘର ଭିତରକୁ ଯିବା ଆସିବା କଲାବେଳେ ଆମେ ସଙ୍ଗେ ସଙ୍ଗେ କବାଟ ବନ୍ଦ କରିଦେଉଥିଲୁ । ଏଇଥି ପାଇଁ କରୁଥିଲୁ ଯେ, ଆଲିଶା ଯେମିତି ହଲ୍ ଭିତରକୁ ନ ଆସେ, କିମ୍ବା ଅନ୍ୟ ଘରକୁ ନଯାଏ । ସେତେବେଳକୁ ଖାଇବା ଘରେ ଚିଡ଼ିଆଖାନାର ତୀବ୍ର ଗନ୍ଧ ବ୍ୟାପି ଯାଇଥିଲା ।

ଆଲିଶା ତା'ର ସମସ୍ତ ଧୂର୍ତ୍ତତାର ସହିତ ଅବିରତ କୌଶଳ ପ୍ରୟୋଗ କରି ଘରସାରା ବାରମ୍ବାର ଖେଦିବାକୁ ଚେଷ୍ଟା କରୁଥିଲା ।

ଯେତେବେଳେ ଭିତର ବାରଣ୍ଡାର କବାଟ ଖୋଲା ଥିବାର ସେ ଦେଖୁଥିଲା, ଖାଇବା ଘରୁ ତାକୁ ବାହାର କରିବା ସହଜ ନଥିଲା ।

ମୁଁ ଖଣ୍ଡେ ମାଂସକୁ ସୂତାରେ ବାନ୍ଧି, ବିଲେଇ ସହିତ ଖେଳିଲା ଭଳି, ଆଲିଶା ସାଙ୍ଗରେ ଖେଳି ଖେଳି ତାକୁ ଘର ବାହାରକୁ ଆଣିବାକୁ ଚେଷ୍ଟା କଲି । ଆଲିଶା ହଲ୍‌କୁ ଦୌଡ଼ି ଚାଲି ଆସୁଥିଲା । ଯଦି କିଏ ସେ ସମୟରେ ଖାଇବା ଘର କବାଟ ବନ୍ଦ କରି ଦେଉଥିଲା, ତାହେଲେ ସେ ଖୁବ୍ ସହଜରେ ସବୁଠାରୁ ଆଗେ ଖସିଯାଇ ଆଉ ଧରା ଦେଉନଥିଲା । ଅତିରିକ୍ତ ଉତ୍‌ଫୁଲ୍ଲ ହୋଇ ସୁନା ପିଲାଟି ଭଳି ତା'ର ଚକ୍ ଚକ୍ କରୁଥିବା ନିର୍ଲଜିଆ ସୁନ୍ଦରିଆ ଆଖି ଯୋଡ଼ାକୁ

ନଗ୍ଲଇ , ପାଟିକୁ ମେଲା କରି ସେ ଆମକୁ ଏହିଭଳି ଥଟ୍ଟା କରୁଥିଲା ।

ରାତି ଦୁଇଟା ପର୍ଯ୍ୟନ୍ତ ଆମର ଆଲିଶା ସହିତ "ଖେଳ" ଚାଲିଥିଲା । ଅବଶେଷରେ ଇଞ୍ଜିନିୟରିଂ ବିଦ୍ୟାର ସମବେତ ଉଦ୍ୟମ ଫଳରେ ଏକ ଜଟିଳ ଉପାୟ ବାହାର କରାଗଲା । ଆଲ୍ୟୋନା ହାତରେ ଦଉଡ଼ିର ଗୋଟିଏ ପାଖ ଓ ଅନ୍ୟ ପାଖଟି କବାଟ କଡ଼ାରେ ବନ୍ଧାଗଲା । ଏ ଉପାୟଟି ମଧ୍ୟ ସହଜରେ କାମ କଲା ନାହିଁ । କବାଟ ବନ୍ଦହେବା ପୂର୍ବରୁ ଆଲିଶା ଖାଇବା ଘରକୁ ଖସି ପଳାଉଥିଲା ।

କିନ୍ତୁ ଶେଷକୁ ଏହି ଉପାୟଟି କାମ ଦେଲା । ହୁଏତ ଆଲିଶା ସେତେବେଳକୁ ଖେଳି ଥକି ଯାଇଥିଲା । କୌଣସିମତେ ତାକୁ ଗାଧୁଆଘରେ ରଖିଲୁ ।

ଏ ଘଟଣାରେ ଉତ୍ତେଜିତ ହୋଇ ମତେ ଅନେକ ରାତି ପର୍ଯ୍ୟନ୍ତ ନିଦ ହେଲାନି , ଶେଷରେ ନିଦ ବଟିକା ଖାଇ ଶୋଇଲି ।

ରାତିରେ ଟିକେ ଆଖିପତା ଲାଗି ଆସିଲା ବେଳକୁ ଧଡ଼ କରି ଶବ୍ଦ ହେଲା ।

ମୁଁ ଡେଇଁପଡ଼ି ଗାଧୁଆଘର ଆଡ଼କୁ ଦୌଡ଼ିଗଲି । ଆଖିକୁ ବିଶ୍ୱାସ ନକଲା ଭଳି ଘଟଣାସବୁ ଘଟୁଥିଲା ସେଠି । ପଛ ଥାବା ଦୁଇଟିକୁ ମୁହଁ ଧୋଇବା ବେସିନ୍ ଭିତରେ ରଖି , ଆଗପଟ ଥାବାରେ କାଚ ଉପରେ ଥିବା ସମସ୍ତ ଜିନିଷ ଫୋପାଡ଼ିବାରେ ସେ ଲାଗିଥିଲା । କାଚ ଉପରେ ଥିବା ଦାନ୍ତଘଷା ବ୍ରସ୍ , ପାଉଡର୍ , ସାବୁନ୍ , ସାମ୍ପୋ , ଅଡ଼ିକଲମ୍ , କ୍ରିମ୍ ଆଦିକୁ ଭାଙ୍ଗି , ଡାଳି , ବୁଣିବାରେ ସେ ଲାଗିଥାଏ । ଗାଧୋଇବା ଟବ ଓ ଚଟାଣ ଉପରକୁ ଫିଙ୍ଗି ଦେଉଥାଏ ।

କୋକିଶିଆଳୀଟି ଧୀରସ୍ଥିର ଭାବେ ମୋ ପଟକୁ ମୁହଁ ବୁଲାଇଲା । ତା'ର ସେହି ଧୂର୍ତ୍ତ ଗୋଳିଆ ମୁହଁଟିରେ ଦାନ୍ତଘଷା ପାଉଡର୍ ବୋଳି ହୋଇଥିଲା । ମୁହଁଟା ପୁଣି ମେଲାହୋଇ ରହିଥାଏ ।

ମୁଁ ସଙ୍ଗେ ସଙ୍ଗେ ଗାଧୁଆଘର ସଫାକରି , ଆଲିଶା ଭାଙ୍ଗିଲା ଭଳି ଛୋଟ ଛୋଟ ଜିନିଷ ସବୁକୁ ଭିତର ବାରଣ୍ଡାକୁ ନେଇ ଆସିଲି । ତା'ପରେ ଆଉ ଦୁଇଟା ନିଦ ବଟିକା ଖାଇ ମୁଁ ଶୋଇପଡ଼ିଲି । ମନେ ମନେ ଖୁସି ହେଉଥିଲି ଯେ , ସେ

ଏଥର ଅସ୍ତ୍ରହୀନା । ଗାଧୁଆଘରେ ଫୋପାଡ଼ିଲା ଭଳି ବା ଭାଙ୍ଗିଲା ଭଳି କିଛି ଜିନିଷ ନାହିଁ । ତେଣୁ ଆଲିଶା ଆଉ କୌଣସି ଶବ୍ଦ କରି ପାରିବ ନାହିଁ ।

କିନ୍ତୁ ହାୟ, ମୋର ସେ ଖୁସି ଆଉ ମୋ ନିଦ କ୍ଷଣିକରେ କୁଆଡ଼େ ଉଭେଇଗଲା । ମୁଁ କୋକିଶିଆଳୀର ଉଦ୍ଭାବନ କ୍ଷମତାକୁ ହେୟ ମନେ କରିଥିଲି ...।

କୌଣସି ଏକ ଅପରିଚିତ ଶବ୍ଦ ଶୁଣି ମୋ ନିଦ ଭାଙ୍ଗିଗଲା । ଆଲିଶାକୁ ଅଭିସମ୍ପାତ ଦେଇ ମୁଁ ଉଠି ଦେଖିଲି, ପିଲାମାନେ ଯେମିତି ବରଫ ପାହାଡ଼ରୁ ତଳକୁ ଖସନ୍ତି, ଆଲିଶା ସେହିଭଳି ଗାଧୁଆଘର ଉପରୁ ତଳକୁ ଖସୁଛି । ଏହି "ପିଲାଟି" ତା ଲମ୍ବ ଲମ୍ବ ନଖଗୁଡ଼ିକୁ ହୁଏତ ବ୍ରେକ୍ ଦେବା ପାଇଁ ବ୍ୟବହାର କରିଥିଲା, ଯାହା ଫଳରେ ଏହି ଶବ୍ଦ ଶୁଣି ମୋ ନିଦ ଭାଙ୍ଗି ଯାଇଥିଲା ।

ମୁଁ ଭଲଭାବେ ବୁଝି ପାରିଲି, ଯେ ପର୍ଯ୍ୟନ୍ତ ଆଲିଶାର 'ରାତି' ନ ଆସିଛି ଅର୍ଥାତ୍ ସକାଳ ନ ହୋଇଛି, ସେ ତା'ର ଏ "ବରଫରେ ଗଡ଼ିବା" ଧନ୍ଦା ବନ୍ଦ କରିବନି ।

ଆମ ସହିତ ରହିବାର ଦୁଇଦିନ ପରେ, ଆଲିଶା ଅସୁସ୍ଥ ହୋଇ ପଡ଼ିଲା ଭଳି ମୋତେ ଲାଗିଲା । ସେ ତା'ର ଗରମ ଆରାମଦାୟକ ବିଛଣା ଛାଡ଼ି, ଥଣ୍ଡା ଚଟାଣ ଉପରେ କଡ଼ ମାଡ଼ି କୁଞ୍ଚେଇବାରେ ଲାଗିଲା । ତା'ର ନିଶ୍ୱାସ ପ୍ରଶ୍ୱାସରେ କେମିତି ଜରଜରିଆ ଭାବ ଥିଲା । ନାକଟା ଶୁଖିଲା ଓ ଗରମ ମନେ ହେଉଥିଲା ।

ମୁଁ ତାକୁ ପଶୁ ଡାକ୍ତରଖାନାକୁ ନେଇଗଲି । ଆଲିଶା ସେଠି ହଠାତ୍ ସମସ୍ତଙ୍କର ନଜରର କେନ୍ଦ୍ରବିନ୍ଦୁ ହୋଇ ପଡ଼ିଲା । ଏଭଳି କି ସୁନ୍ଦର ଶଙ୍ଖମଲମଲ ପଥର ରଙ୍ଗର କଡ଼ଡେନ୍ ଜାତୀୟ କୁକୁରଟିକୁ ନଦେଖି ଆଲିଶାକୁ ସମସ୍ତେ ଦେଖିଲେ ।

କିନ୍ତୁ, ଆଲିଶା ନିଜର ଲୋକପ୍ରିୟତା ପ୍ରତି ନଜର ଦେଉ ନଥିଲା । ଧୀରେ ଧୀରେ ତା ଅବସ୍ଥା ଖରାପ ଆଡ଼କୁ ଗତି କରୁଥିଲା । ଆମକୁ ବିନା ଧାଡ଼ିରେ ଡାକ୍ତରଙ୍କ ପାଖକୁ ଯିବାକୁ ବାଟ ଛାଡ଼ି ଦିଆଗଲା । କିଛି ସମୟ ପୂର୍ବରୁ ବୁଢ଼ୀ ଜଣେ କାନ୍ଦି କାନ୍ଦି ଭିତରକୁ ଯାଇଥିଲେ । ତାଙ୍କ ବିଲେଇଟି ନିଶା ଔଷଧ

ପିଇଲା ବେଳେ ତଣ୍ଟି ନଳୀରେ ଅଟକି ଯାଇଥିଲା । କିନ୍ତୁ ସେ ଭାଗ୍ୟକୁ ବଞ୍ଚିଯାଇଥିବା ଖୁସିରେ ଟଳମଳ ହେଉଥିବା ବିଲେଇକୁ ଧରି ସେ ହସ ହସ ମୁହଁରେ ବାହାରି ଆସିଲା ମାତ୍ରେ ମୁଁ ଆଲିଶାକୁ କୋଳରେ ଧରି ପଶୁ ଡାକ୍ତରଙ୍କ ଘର ଭିତରକୁ ପଶିଗଲି ।

ଆଲିଶା ସେତେବେଳକୁ ଥରୁଥିଲା । ଡାକ୍ତର ତା ଲାଞ୍ଜକୁ ଉଠେଇ ଦେଇ ଥର୍ମମିଟରକୁ ତା ତଳେ ଗୁଞ୍ଜି ଦେଲେ। ତା ଦେହର ଉତ୍ତାପ ୪୪.୫° ସେଣ୍ଟିଗ୍ରେଡ୍ ଥିଲା । ସାଧାରଣତଃ ମଣିଷଠାରୁ ପଶୁମାନଙ୍କର ଶରୀରର ଉତ୍ତାପ ସାମାନ୍ୟ ବେଶୀ ହୋଇଥାଏ , ସେମାନଙ୍କ ପାଇଁ ଏଭଳି ଉତ୍ତାପ ବହୁତ ବେଶୀ ।

ଡାକ୍ତର ଭଲ ଭାବେ ପରୀକ୍ଷା କରି , ତାକୁ ଶକ୍ତ ନିଉମୋନିଆ ହୋଇଛି ବୋଲି ମତ ଦେଲେ ।

ବଜାରରେ ବିକ୍ରି ହେବା ପାଇଁ ଅପେକ୍ଷା କଲା ବେଳେ ବୋଧହୁଏ ଆଲିଶାକୁ ଥଣ୍ଡା ଧରି ପକେଇଥିଲା । ବରଫ ଉପରେ ଅନେକ ସମୟ ଧରି ବସିଲାବେଳେ ଭୟରେ ତା ପାଟିଟା ମେଲା ହୋଇ ଯାଇଥିଲା । ଥଣ୍ଡା ବରଫମିଶା ପବନ ପାଟିରେ ପଶିଯିବା ଫଳରେ ତା'ର ଏ ଅବସ୍ଥା ହୋଇଥିଲା ।

"ଅବସ୍ଥା ଖୁବ୍ ଗୁରୁତର" , ପଶୁ ଡାକ୍ତର କହିଲେ । 'ପେନ୍‌ସିଲିନ' ଇନ୍‌ଜେକ୍‌ସନ୍ ଦେବା ଦରକାର । ତେବେ ବଣୁଆ ଜୀବଟିକୁ ଇନ୍‌ଜେକସନ୍ ଦେଲେ ହୁଏତ ମାନସିକ ଆଘାତ ପାଇପାରେ । ଚେଷ୍ଟା କରିବା ବଟିକା ଦ୍ୱାରା ତାକୁ ଭଲ କରିବାକୁ । ତା ନାଁ କ'ଣ ?" ଡକ୍ତର ପଚାରିଲେ ।

"ଆଲିଶା ।"

"ସାଙ୍ଗିଆ କ'ଣ ?"

କିଛି ବୁଝି ନପାରି ମୁଁ ଡାକ୍ତରଙ୍କୁ ପଚାରିଲି , "କ'ଣ କହିଲେ ?"

ଅଧୈର୍ଯ୍ୟ ହୋଇ ଡାକ୍ତର ପଚାରିଲେ :

"ଆପଣଙ୍କ ସାଙ୍ଗିଆ କୁହନ୍ତୁ !"

ମୁଁ ମୋ ନାଁ କହିଲି । ଡାକ୍ତର ଔଷଧ ବରାଦ କଲେ । ଘରକୁ ଫେରିଲା ବାଟରେ ମୁଁ ଔଷଧ ଦୋକାନକୁ ଗଲି । ଡାକ୍ତର ଦେଇଥିବା ଔଷଧ ଲେଖା

କାଗଜଟିକୁ ବାହାର କରି ପଢ଼ିଲି । ସେଥିରେ ଲେଖାଥିଲା : "କୋକିଶିଆଳୀ ଆଲିଶା ଦ୍ରୁନିନା" ।

ଦ୍ୱିତୀୟତଃ ସବୁଠାରୁ ବଡ଼ ଅସୁବିଧା ହେଲା କେମିତି ଆଲିଶା ଦ୍ରୁନିନାକୁ ପିତା ବଟିକା ଖୁଆ ହେବ ? ଥରେ ନୁହେଁ, ତିନିଥର ! କୋକିଶିଆଳୀକୁ ଦିନକୁ ତିନି ଥର ଠକିବା କିଛି ସହଜ କଥା ନୁହଁ !

ମୁଁ ଖଣ୍ଡେ କଞ୍ଚା କଲିଜାକୁ କାଟି, ତା'ଭିତରେ ବଟିକାଟିକୁ ଗୁଞ୍ଜି ଦେଲି । ପ୍ରଥମ ଥର ମୋ ଚାଲାକି ଧରା ପଡ଼ିଲା ନାହିଁ । ବିଚାରୀ କଲିଜାଟିକୁ ବଟିକା ସହ ଗିଳିଦେଲା । କିନ୍ତୁ ପରେ ପରେ ତା ମୁହଁର ରଙ୍ଗ ବଦଳିଗଲା, ମୁହଁରେ କେମିତି ନଜାଣିଲା ଭଳି ଅଶାନ୍ତି ଭାବ ଫୁଟି ଉଠିଲା । ସେ ସତେ ଯେମିତି କହୁଥିଲା "କ'ଣ ଗୋଟାଏ ଅସନା ଜିନିଷ ତୁ ମତେ ଖୁଆଇଦେଲୁ ?"

ଦ୍ୱିତୀୟଥର ଆଲିଶା ବଟିକାଟିକୁ ଆଡ଼େଇଦେଇ କଲିଜାଟିକୁ ଖାଇଦେଲା ।

ତୃତୀୟଥର ସେ ମୋଟେ କିଛି ଖାଇଲା ନାହିଁ ।

ପୁଣି ଏକମୁହାଁ ହୋଇ, ଗୋଟିଏ କଡ଼ ମାଡ଼ି, ଝାଉଁଳି ପଡ଼ିଥିବା ଲାଞ୍ଜକୁ ପଛ ଦୁଇ ଗୋଡ଼ ମଝିରେ ଛନ୍ଦି, ସୁନା ପିଲାଟି ଭଳି ଶୋଇ ସେ କୁନ୍ଥେଇବାରେ ଲାଗିଲା ।

ଆମେ ଠିକ୍ କରି ନେଲୁ ଯେ, ବଟିକା ଖୁଆଇବା ଆଉ ସମ୍ଭବ ହେବନି । ଔଷଧ ବିନା ସେ ହୁଏତ ମରିଯିବ । ପୁଣିଥରେ ମୁଁ ତାକୁ ପଶୁ ଡାକ୍ତରଙ୍କ ପାଖକୁ ନେଇଗଲି ।

ସେ କହିଲେ, "ଠିକ୍ ଅଛି, ଇନ୍‌ଜେକ୍‌ସନ୍ ଦେବା ପାଇଁ ଚେଷ୍ଟା କରିବା ।"

ନର୍ସ ଆଲିଶାର ପଛ ଗୋଡ଼ଟିକୁ ଟାଣି ଧରିଲେ । ଡାକ୍ତର ବଡ଼ ଇନ୍‌ଜେକ୍‌ସନ୍ ଛୁଞ୍ଚିଟିକୁ ଟେକି ଧରିଲେ । ମୁଁ ଏତେ ଡରି ଯାଇଥିଲି ଯେ, ମୋ ନିଶ୍ୱାସ ଆପେ ଆପେ ବନ୍ଦ ହୋଇଗଲା । ଯେତେହେଲେ ବି ଆଲିଶା ଗୋଟାଏ ପଶୁ ! ତେବେ ସବୁ ସୁରୁଖୁରୁରେ ହୋଇଗଲା ।

ତା ପରଠାରୁ ଆଲିଶାର ଦେହ ଭଲ ହେବାକୁ ଲାଗିଲା । କିନ୍ତୁ ଦିନକୁ

ତିନିଥର ତାକୁ ଡାକ୍ତରଙ୍କ ପାଖକୁ ନେଇ ଇନ୍‌ଜେକ୍‌ସନ୍ ଦେବା ଅସମ୍ଭବ ହୋଇ ପଡ଼ିଲା । ମୋ ସ୍ୱାମୀ, ଯିଏକି କେବେହେଲେ ହାତରେ ଛୁଞ୍ଚି ଧରିନଥିଲେ, ସେ କିନ୍ତୁ ଏକ ବୀରତ୍ୱର ପରିଚୟ ଦେଲେ : ଆଲିଶାକୁ ଇନ୍‌ଜେକ୍‌ସନ୍ ଦେବାକୁ ସେ ସ୍ଥିର କଲେ ।

ଭୟ ଓ ସନ୍ଦେହରେ ଗୁହୁଁଥିବା ଆଲିଶାକୁ କୋଳରେ ଧରି ମୁଁ ବସିଲି । ମୋ ସ୍ୱାମୀ ସିରିଞ୍ଜରେ ଔଷଧ ପୂରେଇ ଛନ୍ଦା ହୋଇଥିବା ପଛଗୋଡ଼ରେ ଆୟୋଡିନ୍ ଲଗେଇ ସାହସର ସହିତ ଛୁଞ୍ଚି ଫୋଡ଼ିଲେ । ଆଲିଶା ଭୟରେ ଥରିଯାଇ, ପଛପଟୁ କିଏ ଗୋଟିଏ ବିଶ୍ୱାସଘାତକତା କରି କାମୁଡ଼ିଦେଲା ନା କ'ଣ, ଦେଖିବା ପାଇଁ ଚେଷ୍ଟା କଲା । କ'ଣ ପାଇଁ କେଜାଣି ଔଷଧ ଛୁଞ୍ଚି ଭିତର ଦେଇ ତା ଦେହକୁ ଗଲାନି । "ଅନଭିଜ୍ଞ ଡାକ୍ତର" ମୁହଁକୁ ବିକୃତ କରି ଛୁଞ୍ଚିଟିକୁ କାଢ଼ି ଆଣିଲେ । ପୁଣି ଥରେ ଆଲିଶାର ଗୋଡ଼କୁ ସଜାଡ଼ି ଧରିଲେ । ଏସବୁ ମଧ୍ୟରେ ମୋ ହାତଟା କେତେବେଳେ ଯାଇ ଆଲିଶାର ପାଟି ଭିତରେ ରହିଥିବାର ମୁଁ ଆବିଷ୍କାର କଲି । ଠିକ୍ ଏହି ସମୟରେ ହିଁ ମୋ ସ୍ୱାମୀ ପୁଣି ଥରେ ଇନ୍‌ଜେକ୍‌ସନ୍ ଦେଲେ । ମୋ ଆଖି ଦୁଇଟି ଆପେ ଆପେ ବନ୍ଦ ହୋଇଗଲା । ଆଲିଶା ସେତେବେଳକୁ ଲୁହା ଚେନ୍‌ଟିକୁ କାମୁଡ଼ି ଛିଣ୍ଡେଇ ଦେଇଥିଲା । ଯେଉଁମାନେ ତାକୁ କଷ୍ଟ ଦେଉଛନ୍ତି, ସେ କାହିଁକି ସେମାନଙ୍କୁ ଆଘାତ ନକରି ସବୁ ସହିଗଲା ? କେମିତି ଏହି ବଣୁଆ ପଶୁଟି ଜାଣିପାରିଲା ଯେ, ଏସବୁ ତା ଭଲ ପାଇଁ କରାଯାଉଛି ?

ସେ କେମିତି କେଜାଣି ଜାଣିପାରିଥିଲା । ତା ଭିତରେ ଲୁଚି ରହିଥିବା ସହଜାତ ପ୍ରବୃତ୍ତି ହୁଏତ ତାକୁ ଏହା ଜଣେଇ ଦେଇଥିଲା, କିମ୍ବା ସେ ମତେ ଖୁବ୍ ବିଶ୍ୱାସ କରୁଥିଲା । ଇନ୍‌ଜେକ୍‌ସନ୍ ଦେଲାବେଳେ ସେ କେବଳ ଦାନ୍ତକୁ ଟିକେ ଚିପି ଦେଇଥିଲା ।

ତା ଦେହ ଧୀରେ ଧୀରେ ଭଲ ହେବାକୁ ଲାଗିଲା । ସ୍ୱାସ୍ଥ୍ୟ ପରିବର୍ତ୍ତନର ଲକ୍ଷଣ ସବୁ ଦେଖା ଦେଲା । ଆଲିଶା ଯେତେବେଳେ ପୁଣି ତା ଦୁଷ୍ଟାମି ଆରମ୍ଭ

କରିଦେଲା , ଆମେ ବୁଝିଲୁ ଯେ , ଏଥର ସବୁ ଠିକ୍ ଅଛି ।

ଭୟ ଓ ଥଣ୍ଡାରେ ଥରୁଥିବା ଚଢ଼େଇ ବଜାରର ସେହି ଦୁଃଖିନୀ ଆଲିଶାକୁ କେହି ପଗ୍ଭରୁ ନଥିଲେ ସେ ହଠାତ୍ ଆମ ଘରର ପ୍ରିୟପାତ୍ର ହୋଇଗଲା । ଏହି ଜୀବଟିକୁ ଆମ ଛୋଟ ପରିବାର ଅତି ଆଗ୍ରହ ସହକାରେ ଆଦର କରିବାରେ ଲାଗିଲେ ।

ଆମ ଭିତରୁ ପ୍ରତ୍ୟେକ ତା'ର ପ୍ରିୟପାତ୍ର ହେବାକୁ ଚେଷ୍ଟା କଲେ । ମୁଁ ତା'ର ସବୁଠୁ ବେଶି ପ୍ରିୟ ହୋଇ ପାରିଥିବାରୁ ଗର୍ବ ଅନୁଭବ କରୁଥିଲି ।

ଆଲିଶାକୁ କେବଳ ମୁଁ ହାତରେ ଧରି ପାରୁଥିଲି , ଆଉ କାହାରି କୋଳକୁ ସେ ଯାଉ ନଥିଲା । ତଥାପି ପ୍ରଥମ କେତେ ସେକେଣ୍ଡ ସେ କାନ ଦୁଇଟିକୁ ଟେକିଦେଇ ଥରି ଉଠୁଥିଲା । ମଣିଷର ଖୁବ୍ ନିକଟତର ହୋଇଥିବାରୁ ବଣୁଆ ପଶୁର ସେହି ସହଜାତ ପ୍ରବୃତ୍ତି ବୋଧହୁଏ ତା ମଧ୍ୟରେ ଯୁଦ୍ଧ କରୁଥିଲା ।

ମୋ ହାତରୁ କେବଳ ଆଲିଶା ଖାଦ୍ୟ ଗ୍ରହଣ କରୁଥିଲା । ସେ ସବୁବେଳେ ଧୀରସ୍ଥିର ଭାବେ ମୋ ହାତରୁ ଖାଦ୍ୟ ଖଣ୍ଡଗୁଡ଼ିକୁ ଗୋଟି ଗୋଟି କରି ଏଭଳି ଭାବେ ଖାଉଥିଲା ଯେ , ଆଙ୍ଗୁଳି କାମୁଡ଼ିବାର ଭୟ ମୋର ନଥିଲା ।

ଥରେ ମୋ ସ୍ୱାମୀ ମୋ ଭଳି ତାକୁ ଖୁଆଇବାକୁ ସ୍ଥିର କଲେ । କଲିଜା ଖଣ୍ଡେ ଧରି ତା ଆଡ଼କୁ ବଢ଼େଇ ଦେଲେ । ଆଲିଶା ସୁନା ପିଲାଟି ପରି କଲିଜାଟିକୁ ନେଇ ସାବଧାନ ସହକାରେ ତଳେ ଥୋଇଦେଲା ଏବଂ ବିଦ୍ୟୁତ୍ ଭଳି ତା "ଅନ୍ନଦାତାର" ହାତକୁ କାମୁଡ଼ିବା ପାଇଁ ଝାମ୍ପି ପଡ଼ିଲା । ସଙ୍କେତରେ ସେ କହିବାକୁ ଗ୍ଭହୁଁଥିଲା , "ବୃଥାଟାରେ ଚେଷ୍ଟା କରୁଛ ସିନା ତମେ, କିନ୍ତୁ ମତେ ନିଜର କରି ପାରିବନି । ତମ ଆଙ୍ଗୁଳିକୁ ସମ୍ଭାଳ କହୁଛି ।" ଏହା ପରେ ସେ ଧୀରସ୍ଥିର ଭାବେ ଧୈର୍ଯ୍ୟର ସହିତ ଖାଇବାରେ ଲାଗିଲା ।

ମୋ ଝିଅ ଆଲ୍ୟୋନାକୁ ଆଲିଶା ଆଦୌ ସହି ପାରୁନଥିଲା । କେମିତି ତା ଗୋଡ଼କୁ କାମୁଡ଼ିବ , ବାଟ ଖୋଜୁଥିଲା । ଆଲ୍ୟୋନା ହାତରେ ଝାଡ଼ୁ ଖଣ୍ଡେ ଧରି ଘର ଭିତରେ ପ୍ରାୟ ଡେଇଁ ଡେଇଁ ଗ୍ଭଲୁଥିଲା । ସବୁବେଳେ ସେ

ଚିତ୍କାର କରିବାର ଶୁଣା ଯାଉଥିଲା, "ମା, ଦୌଡ଼ି ଆ, ରକ୍ଷାକର !"

କାହିଁକି ଯେ ଆଲିଶା ଆଲ୍ୟୋନାକୁ ସହି ପାରୁ ନଥିଲା, କହି ହେବନି । ଆମକୁ ତା' ଅତୀତ ଘଟଣା ତ କିଛି ଜଣାନଥିଲା । ଷ୍ଟେପୀ ଅଞ୍ଚଳର କେଉଁ ଜାଗାରୁ ବାପା ମା ଛେଉଣ୍ଡ ଏହି କୋକିଶିଆଳୀଟି ଆସିଥିଲା କିଏ ଜାଣେ ? ଆଲ୍ୟୋନା ଭଳି ଦେଖିବାକୁ ଲମ୍ବା ଡଗ ଡଗ ହୋଇ ଚାଲୁଥିବା, ବଡ଼ ପାଟିଆ ଆଲୁରୀ ମାହୁରୀ ଝିଅଟିଏ ହୁଏତ କେବେ ତା ପ୍ରତି ଖରାପ ବ୍ୟବହାର କରିଥିଲା କେଉଁଠି, କିଏ କହିପାରିବ ?

କିମ୍ବା ଆଲ୍ୟୋନାର ବଡ଼ ପାଟି ଓ ଚାଲି ପ୍ରତି ସେ ବିରକ୍ତି ପ୍ରକାଶ କରୁଥିଲା ?

ମୋର କଥାବାର୍ତ୍ତା, ଚାଲିଚଳନକୁ ମୁଁ ଖୁବ୍ ସାବଧାନ ସହକାରେ କରିବାକୁ ଲାଗିଲି । ସାଙ୍ଗ ସାଥୀମାନେ ଥଟ୍ଟା କରିବାକୁ ଲାଗିଲେ ଯେ, ଯେଉଁ ଦିନଠୁ ଆଲିଶା ଆସିଲା, ମୁଁ କାଳେ ଭଲ ଭାବରେ ଚଲାବୁଲା କରୁନି, ଧୀରେ ଧୀରେ ଚାଲୁଛି, ହାତ ମୁହଁ ଭଙ୍ଗି ନକରି ଠାରୁଛି । କଥା କହୁନି, ପାରା ଘୁମୁରିଲା ଭଳି ଘୁମୁରଉଛି ।

ବନ୍ଧୁମାନଙ୍କ ମଧ୍ୟରୁ କେତେଜଣ ପ୍ରଶ୍ନ ବି କରିଥିଲେ : କାହିଁକି ମୁଁ ଗୋଟିଏ ଗୃହପାଳିତ ପଶୁ ବଦଳରେ ଏହି ବଣୁଆ ପଶୁଟିକୁ ପାଳିଛି ? କେତେ ଯେ ହଇରାଣ ହେବାକୁ ପଡ଼ୁଛି ତା ପାଇଁ !

ମୁଁ ଉତ୍ତର ଦେବାକୁ ଯାଇ କାନ୍ଧ ଦୁଇଟିକୁ କେବଳ ନଚାଇ ଦେଉଥିଲି । କାହିଁକି ଜାଣନ୍ତି ? କାରଣ, ଏହି ଜୀବଟି ମୋ ଜୀବନରେ ହସ ଖୁସି ଭରି ଦେଇଥିଲା । ମୁଁ ଏଇଥି ପାଇଁ ଖୁସି ଥିଲା ଯେ, ଅନ୍ତତଃ ଗୋଟିଏ ଅମାନିଆ ଅବିଶ୍ୱାସୀ ପଶୁକୁ ପୋଷା ମନେଇ ପାରିଛି, ଟିକିଏ ଆଦର ସୋହାଗ ଦେଇ । ଦିନକୁ ଦିନ ଆମ ଭିତରେ ନୂଆ ନୂଆ ସୂତାର ଖିଅ ଯୋଡ଼ି ହେଲା ଭଳି ସମ୍ପର୍କ ବଢ଼ି ଚାଲିଥିଲା ।

ମୁଁ ଘରକୁ ଫେରିଲା ବେଳେ ଲିଫ୍ଟ ବନ୍ଦ ହେଲାକ୍ଷଣି ଆଲିଶା କାନ ଦୁଇଟିକୁ ଟେକି ଦେଇ ଝିଣ୍ଟିକା ଭଳି ଚେଁ ଚେଁ ଶବ୍ଦ କରି କୁକୁର ଭଳି ଡିଆଁଟିଏ ମାରି

ଦେଇ କବାଟ ପାଖରେ ଆସି ହାଜର ହେଉଥିଲା । କିନ୍ତୁ ସତ କହିଲେ, ଯେତେବେଳେ ମୁଁ ଘର ଭିତରକୁ ପଶୁଥିଲି, ସେ କୁକୁର ଭଳି ବ୍ୟବହାର ନ କରି ଏଭଳି ଦେଖେଇ ହେଉଥିଲା ଯେ, ସତେ ଯେମିତି ତା'ରି କାମ ପାଇଁ ଆସିଛି । ଏତିକି ଟିକିଏ ଜୀବ, କିନ୍ତୁ ତା'ର ଆତ୍ମଗର୍ବ କିଛି କମ୍ ନୁହେଁ ।

ସେ ଯାହା ହେଉ, ମତେ କିନ୍ତୁ ତା'ର ଏ ଗର୍ବ, ସଂଯମତା, ସ୍ୱାଧୀନ ମନୋବୃତ୍ତି ବେଶ୍ ଭଲ ଲାଗୁଥିଲା । ତା ସହିତ ଏହି ନିବିଡ଼ତା ଯେତେ ବଢ଼ିଲା, ତା'ର ମୂଲ୍ୟ ମୁଁ ସେତେ ବେଶି କରି ଦେଲି ।

ସଂସାରର ଜଞ୍ଜାଳ ଭିତରେ ଦିନସାରା ବୁଡ଼ି ରହି, ସନ୍ଧ୍ୟା ବେଳେ ନିଜ ଉପରେ ଅଶାନ୍ତି ହୋଇ କ୍ଳାନ୍ତ ଶରୀରକୁ ଯେତେବେଳେ ମୁଁ ସୋଫା ଉପରେ ମେଲେଇଦେଇ ବସିପଡ଼େ, ସେତେବେଳେ ଏହି ବଣୁଆ ପଶୁଟି ମୋ କୋଳ ଉପରକୁ ହଠାତ୍ ଡେଇଁ ପଡ଼ିଲେ କେତେ ଯେ ଆନନ୍ଦ ମିଳେ, ତାହା କହି ହେବନି !

ପିଲା ଦୁଷ୍ଟାମି କଲେ ବା ଜିନିଷପତ୍ର ଭଙ୍ଗାଭଙ୍ଗି କଲେ, ମା'ର ଭଲ ପାଇବାରେ କ'ଣ କେବେ ଉଣା ହୁଏ ?

ଆଲିଶାର ଚରିତ୍ର ମାଙ୍କଡ଼ମାନଙ୍କ ଭଳି ଥିଲା । ଛିଣ୍ଡାଇବା, ଭାଙ୍ଗିବା, କାମୁଡ଼ିବା ବିନା ସେ ରହିପାରୁ ନଥିଲା । ସେଥି ପାଇଁ ଆମେ ନଥିବା ସମୟରେ ଓ ରାତିରେ ତାକୁ ତା "ନିଜ କୋଠରୀରେ" ଅଥବା ଗାଧୁଆଘର ଏବଂ ହଲ୍‌ରେ ଛାଡ଼ି ଦେଉଥିଲୁ । ତାକୁ କିନ୍ତୁ ଏସବୁ ଭଲ ଲାଗୁନଥିଲା । ଘର କବାଟ ତଳେ ଗାତ କରିବା, ଆଞ୍ଚୁଡ଼ିବା କାମରେ ସେ ଲାଗିଯାଉଥିଲା । ଦିନେ ସକାଳେ ହଲ୍ ଘରର ଚଟାଣରୁ କାଠ ବାହାରି ଏଣେତେଣେ ପଡ଼ିଥିବାର ଦେଖି ଆମେ ଭୟ ପାଇଗଲୁ ... ।

ଆମେ ଘରେ ଥିଲାବେଳେ ଆଲିଶାକୁ ଘର ଭିତରକୁ ଅଣାଯାଉଥିଲା କିମ୍ବା ସେ ନିଜେ ଆସୁଥିଲା । ଘରର କୌଣସି ଗୋଟିଏ ଅବାଗିଆ କୋଣ ଜାଗାକୁ

ବାଛି ନେଇ, ସେ ତାକୁ ତା ଘର ରୂପେ ଦଖଲ କରୁଥିଲା ଏବଂ ସେଇଠି ତା'ର ସବୁ କାମଦାମ କରୁଥିଲା ।

କେତେବେଳେ କେମିତି ନ ଶୁଣିଥିଲା ଭଳି, ଆଲମାରୀ ପଛପଟୁ ତା ରୁମରୁମିଆ ଲାଞ୍ଜକୁ ଧରି ଟାଣିବାର ସ୍ୱାଧୀନତା ମତେ ଦେଉଥିଲା । ସେ କିନ୍ତୁ ପ୍ରଥମେ ଡରେଇଲା ଭଳି ଖିଙ୍କାରି ଉଠି ମୋ ଆଡ଼କୁ ଝାମ୍ପିପଡ଼ିଲା ଭଳି ଦୌଡ଼ି ଆସୁଥିଲା । କିନ୍ତୁ କେବେହେଲେ ସେ ମତେ କାମୁଡ଼ି ନଥିଲା ।

ତେବେ ସେ ଯେମିତି ଅଙ୍କେଇ ବଙ୍କେଇ ସୋଫା ସ୍ପ୍ରିଂ ଭିତରେ ପଶି ଯାଇ ତା'ର ଘର ଭଳି ମନେ କରୁଥିଲା, ତାକୁ ବା ଆମେ କ'ଣ କରି ପାରିଥାନ୍ତୁ ? ପ୍ରଥମେ ପ୍ରଥମେ ଆମେ ଘର ସଫାକରା ମେସିନ୍‌ର ସାହାଯ୍ୟ ନେଉ଼ଥିଲୁ । ଆମେ ସମ୍ମାନର ସହ ତା'ର ନାଁ ଦେଇଥିଲୁ "ମେସିନ୍‌ଦାଦା" । ଏହାର ଘୁଁ ଘୁଁ ଶବ୍ଦରେ ଆଲିଶା ସୋଫା ଭିତରୁ ବାହାରି ଆସୁଥିଲା । ତା'ର ଚକ୍‌ଚକ୍ କରୁଥିବା ଆଖି ଯୋଡ଼ିକ ଦୌଡ଼ି ଯାଇ ଗାଧୁଆଘର ଉପରେ ପଡ଼ୁଥିଲା । ସେ ଡିଆଁଟିଏ ମାରିଦେଇ ତା ବିଛଣାରେ ଯାଇ ଶୋଇ ପଡ଼ୁଥିଲା । କିନ୍ତୁ କିଛି ଦିନ ପରେ ସେ ଘରସଫା ମେସିନ୍ ସହିତ ଅଭ୍ୟସ୍ତ ହୋଇଗଲା ଓ ତା'ର ଡର ମଧ୍ୟ ଭାଙ୍ଗିଗଲା । ତାକୁ ଦେଖିଲା ମାତ୍ରେ ଜୋରରେ ସେ ଖଣ୍ଡିକାଣଟାଏ ମାରିବାକୁ ଆରମ୍ଭ କରି ଦେଉଥିଲା । ଏମିତିକି ଥରେ ସେ ମେସିନ୍‌କୁ କାମୁଡ଼ିବାକୁ ଦୌଡ଼ି ଆସିଥିଲା ।

ଟେଲିଫୋନ୍ ତାରକୁ ଟିକି ଟିକି କରି କାଟିବା ତା'ର ଆଉ ଗୋଟିଏ ସଉକ ଥିଲା ।

କିନ୍ତୁ ଆମକୁ ସବୁଠାରୁ ବେଶି ଦୁଃଖ ଦେଇଥିଲା ଚିଡ଼ିଆଖାନାର ଗନ୍ଧ ଭଳି ତା'ର ସେ କଟୁଗନ୍ଧ, ଯାହାକି ଘରସାରା ଏପରିକି ଉପର ମହଲା ପର୍ଯ୍ୟନ୍ତ ବ୍ୟାପିଯାଇଥିଲା ।

ବସ୍ କିମ୍ବା ମେଟ୍ରୋ ଭିତରକୁ ପଶିଗଲାବେଳେ ମୋ ଲୁଗାପଟାରେ ଆଲିଶା ଦେହର ଗନ୍ଧ ଲାଖି ରହୁଥିଲା । ଲୋକେ ନାକଟେକି ଗନ୍ଧ ବାରିବାକୁ ଚେଷ୍ଟା

କରୁଥିଲେ । ଥରେ ଜଣେ ବୁଢ଼ୀ ବିରକ୍ତ ହୋଇ ମତେ ସମାଲୋଚନା କରୁଥିବାର ମୋ କାନରେ ପଡ଼ିଥିଲା, "ଆଖି ଦୁଇଟି କେଡ଼େ ସୁନ୍ଦର ଭାବେ ରଙ୍ଗେଇଛି । କିନ୍ତୁ ଦେହଟା ଛେଳି ଭଳି ଗନ୍ଧଉଛି ।"

ଏହି ଦୁର୍ଗନ୍ଧରୁ ବର୍ତ୍ତିବା ମୋ ପକ୍ଷରେ ଆଦୌ ସମ୍ଭବ ନଥିଲା । ଯେ କୌଣସି ସୁଗନ୍ଧ ଅତର ମଧ୍ୟ ତା ଆଗରେ ହାର ମାନୁଥିଲା ।

ସେ କେତେଦିନ ମୁଁ ହାତରେ କନାଖଣ୍ଡେ ଗୁଡ଼େଇ ପ୍ରାୟ ଆଣ୍ଠେଇଲା ଭଳି ଚାଲୁଥିଲି । ସଦ୍ୟ ଧୋଇଥିବା ସ୍ଥାନରେ ସୁଗନ୍ଧ ସ୍ପ୍ରେକୁ ବୋଳି ଦେଉଥିଲି । ଏକକାଳୀନ ବେଶି ପରିମାଣରେ ସ୍ପ୍ରେ କିଣିବାର ଦେଖି ଦୋକାନରେ ଲୋକେ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ।

ମୋର ଜଣେ ବନ୍ଧୁ ଭାରତରୁ ଆଣିଥିବା ଏକ ଅମୂଲ୍ୟ ଉପହାର — ଚନ୍ଦନକାଠର ଉଦ୍‌ବତୀ ମତେ ଦେଇଥିଲେ । ଆମେ ତା'ର ନାଁ ଦେଇଥିଲୁ "ଆଣ୍ଟିଫକ୍‌ସିନ୍" । ଯେତେବେଳେ ବନ୍ଧୁବାନ୍ଧବ ଘରକୁ ଆସୁଥିଲେ , ସେ ସୁଗନ୍ଧ କାଠିରୁ ଗୋଟିଏ କି ଯୋଡ଼ିଏ ଜଳାଇ ଦେଉଥିଲୁ । ତା'ର ସେହି ମନୋରମ ସୁଗନ୍ଧିତ ଧୂଆଁ ଧୀରେ ଧୀରେ ଘରସାରା ଖେଳିଯାଇ , ଦୂରରେ ଥିବା ରହସ୍ୟମୟୀ ଭାରତବର୍ଷର ମନ୍ଦିର କଥା ମନେପକେଇ ଦେଉଥିଲା । କିନ୍ତୁ ଆଲିଶା ... । କୌଣସି "ଆଣ୍ଟିଫକ୍‌ସିନ୍" ତା'ର ଗନ୍ଧକୁ ଟପି ଯାଉନଥିଲା ।

ଭାଗ୍ୟବଶତଃ ବସନ୍ତ ଋତୁର ଆରମ୍ଭରେ ଆମ ଏହି ସମସ୍ୟାର ସମାଧାନ ହୋଇଗଲା , ଆମେ ମସ୍କୋର ଉପାନ୍ତ ଅଞ୍ଚଳରେ ଗ୍ରୀଷ୍ମକାଳରେ ରହିବା ପାଇଁ ଗୋଟିଏ ଘର ଭଡ଼ାରେ ନେଲୁ । ଆମର ସମସ୍ତ ପଶୁ — ଆଲିଶା , ତିଖନ୍ , ପୁଷିଙ୍କୁ ନେଇ ସେ ଘରକୁ ଗଲୁ । ସେଠାରେ ଜାଲିଘେର ଦେଇ କୁକୁର ଘର ଭଳି ବଡ଼ ଘରଟିଏ ଆଲିଶା ପାଇଁ ତିଆରି କରିଦେଲୁ ।

ନୂଆ ଘରକୁ ଆସିବାର ପରଦିନ , ତିଖନ୍ ଖୁବ୍ ଆନନ୍ଦରେ ଆଲିଶା ସହିତ ଖେଳିବାର ଦେଖି ମୁଁ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲି । ସେମାନେ ଦୁଇଟି କୁକୁର ଛୁଆଭଳି ଖେଳୁଥିଲେ । କୁକୁରର କୋକିଶିଆଳୀ ପ୍ରତି ଜନ୍ମଗତ ଘୃଣାର କୌଣସି ଚିହ୍ନ ସେଥିରେ ନଥିଲା ।

ମୋ ଜୀବନରେ ଟିଖନ୍ ଭଳି ଦୟାଳୁ ଓ ମେଳାପୀ ଜୀବ ମୁଁ ଦେଖିନଥିଲି । ସେ ସମସ୍ତଙ୍କ ସହିତ ବନ୍ଧୁତା ସ୍ଥାପନ କରିବାକୁ ଚାହୁଁଥିଲା । ଏଭଳି କି ଆମେ ରହୁଥିବା ଘର ପାଖ ଜଙ୍ଗଲରୁ ରାତିରେ ଚାଲି ଆସୁଥିବା ଝିଙ୍କମାନଙ୍କ ସହିତ ମଧ୍ୟ । ପ୍ରତିଥର ବନ୍ଧୁତା ସ୍ଥାପନ କରିବାକୁ ଯାଇ ଖଣ୍ଡିଆ ଖାବରା ନାକ, ଭଙ୍ଗାମନ ନେଇ ସେ ଫେରୁଥିଲା । କିନ୍ତୁ ସେ ବିଶ୍ୱାସ କରୁଥିଲା ଯେ, ସେ କଣ୍ଟକିତ ବଲ୍‌ଟି (ଝିଙ୍କ) ଦିନେ ନା ଦିନେ ତା ବନ୍ଧୁତ୍ୱର ମୂଲ୍ୟ ବୁଝିବ ।

ଥରେ କେମିତି କେଜାଣି ଟିଖନ୍ ଜାଲି ଭିତରେ ପଡ଼ିଗଲା । ହୁଏତ ଡେଇଁ ପଡ଼ିଲା ନା କ'ଣ ? ଜାଲିବାଡ଼ର ଉଚ୍ଚତା ଥିଲା ଦୁଇ ମିଟର ଖଣ୍ଡ । ମୁଁ ଲକ୍ଷ୍ୟ କରିବାକୁ ଲାଗିଲି, କେମିତି ସେ ସେଥିରୁ ବାହାରିବ ।

କିନ୍ତୁ ସେ ସେ କାମଟିକୁ ବେଶ୍ ସହଜରେ କରିଥିଲା । ବିଲେଇ ଭଳି ଆଗ ଗୋଡ଼ର ଥାବାରେ ଜାଲିକୁ ଜାବୁଡ଼ି ଧରି ସେ ଉପରକୁ ଉଠିଲା । କହିବା ବାହୁଲ୍ୟ ଯେ, ଏହା ଗୋଟିଏ କେମିତି ଅବାଗିଆ କଥା । କିନ୍ତୁ ଏସବୁ ଦେଖିଲା ପରେ ଯାଇଁ ମୁଁ ନିଶ୍ଚିତ ହେଲି ଯେ, "ଜାଲି ଭିତରେ କୁକୁର"ର କଥାଟିର ଅର୍ଥ କ'ଣ ।

ସେହି ଦିନଠାରୁ ଟିଖନ୍ ଦିନ ରାତି ଯେକୌଣସି ସମୟରେ ତା ବାନ୍ଧବୀ ନିକଟକୁ ଯିବାକୁ ଲାଗିଲା । କିନ୍ତୁ ପ୍ରତିଦିନ ଗୋଟିଏ ନିର୍ଦ୍ଦିଷ୍ଟ ଢଙ୍ଗରେ ସେମାନଙ୍କର ଦେଖା ସାକ୍ଷାତ୍ ହେଉଥିଲା । ଟିଖନ୍‌କୁ ପାଖେଇ ଆସିବାର ଦେଖି, ଆଲିଶା ନିଜକୁ ସମ୍ଭାଳି ନପାରି ଜାଲି ଭିତରେ ଏଣେତେଣେ ବୁଲିବାକୁ ଆରମ୍ଭ କରି ଦେଉଥିଲା । ଟିଖନ୍‌ର ଗୋଡ଼ ଆଲିଶା ରାଜ୍ୟର ମାଟିରେ ଲାଗିଲା ପର୍ଯ୍ୟନ୍ତ ଆଲିଶା ଜାଲି ଭିତରେ ଚକ୍କର କାଟୁଥିଲା । ପରେ ଟିଖନ୍ ତା ଲାଞ୍ଜଟିକୁ କେମିତି ଧରିବ, ସେଇ ବଡ଼ ଆଶା ନେଇ ତା ପଛେ ପଛେ ଦୌଡ଼ୁଥିଲା । ଦୁଇଜଣଯାକ ଖେଳି ଖେଳି ଉତ୍ତେଜିତ ହୋଇ ପଡ଼ୁଥିଲେ । ବେଳେ ବେଳେ ଆଲିଶା ତା ଗତିକୁ ଏମିତି ଭାବରେ ବଦଳେଇ ଦେଉଥିଲା ଯେ, କୁକୁରଟି ହଠାତ୍ ନିଜକୁ ସମ୍ଭାଳି ନପାରି ଜାଲି ଭିତରେ ଗୋଟିଏ କୋଣରେ ଧଡ଼କିନା ଧକ୍କା ଖାଇଯାଇ ପଡ଼ୁଥିଲା ।

ସେମାନଙ୍କର ଏହିଭଳି ଧୁମ୍‌ଧାମ୍ ଶବ୍ଦ ଶୁଣି ଆମ ବିଲେଇ ପ୍ରାୟ ଜାଲି ପାଖକୁ ଦୌଡ଼ି ଆସୁଥିଲା । ଖୁଣ୍ଟ ଉପରେ ପହରା ଦେଲା ଭଳି ସେ ଦେଖାଯାଉଥିଲା । ତା ବଡ଼ ବଡ଼ ହଳଦିଆ ଆଖି ଦୁଇଟି ଲଢ଼ୁଥିବା ଯୋଦ୍ଧା ଦୁଇଜଣଙ୍କ ଉପରେ ଲାଖି ରହିଥିଲା । ସେ ନିଶ୍ଚିତ ଭାବେ ଆଲିଶା ପଟ ନେଉଥିଲା । ଟିଖନ୍‌ର ମୁନିଆ ଦାନ୍ତଗୁଡ଼ାକ ଭିତରେ ଆଲିଶା କାଳେ ଗ୍ରିପିହୋଇଯିବ ଭାବି ସେ ଖୁବ୍ ବ୍ୟସ୍ତ ହୋଇପଡ଼ୁଥିଲା । ସେ ସମୟରେ ତା ଦେହର ପଛ ଅଂଶଟି ଉପରକୁ ଟେକି ହୋଇ ରହୁଥିଲା । ରୁମସବୁ ଟାଙ୍କୁରି ଉଠୁଥିଲା । ଏତେ ଜୋରରେ ସେ ଚିତ୍କାର କରୁଥିଲା ଯେ, ମନେ ହେଉଥିଲା ସତେ ଯେମିତି ଏଇକ୍ଷଣି ଟିଖନ୍ ଉପରକୁ ଡେଇଁପଡ଼ିବ । ଶେଷରେ ମତେ ତାକୁ ସେଠାରୁ ନେଇ ଆସିବାକୁ ପଡ଼ୁଥିଲା ।

ଆଲିଶା ଓ ଟିଖନ୍‌କୁ ମୁଁ ଗୋଟିଏ ଥାଳିରେ ଖାଇବାକୁ ଦେଉଥିଲି । ଜାଲି ଘରର ମାଲିକାଣୀ କିନ୍ତୁ ସବୁବେଳେ ପ୍ରଥମେ ଖାଇବା ଆରମ୍ଭ କରି ଦେଉଥିଲା । ଯେ ପର୍ଯ୍ୟନ୍ତ ବାନ୍ଧବୀଟି ପେଟେ ଖାଇ ବାସନ ପାଖରୁ ନ ଉଠିଛି, ସେ ପର୍ଯ୍ୟନ୍ତ ଟିଖନ୍ ପାଟିରୁ ଲାଳ ବୋହିଯାଉଥିଲେ ବି ଶାନ୍ତଶିଷ୍ଟ ପିଲାଟି ଭଳି ଗୋଟିଏ କଡ଼କୁ ଆଡ଼େଇ ହୋଇ ଧୈର୍ଯ୍ୟ ସହକାରେ ଅପେକ୍ଷା କରୁଥିଲା । କିନ୍ତୁ ବାନ୍ଧବୀଟି ବଡ଼ ଲୋଭୀ ଭଳି ମନେ ହେଲା । କାଳେ ସବୁ ଖାଇ ନପାରିବ ଭାବି ଆଲିଶା ତରତର ହୋଇ ବଡ଼ ବଡ଼ ମାଂସ ଖଣ୍ଡ ସବୁ ଚଟକରି ଥାଳିରୁ ଉଠେଇ ନେଇ ଗୋଟା ଗୋଟା ଗିଳିବାରେ ଲାଗିଲା । ତା ତଣ୍ଟିରେ ମାଂସ ଅଟକି ଯିବାର ଭୟ ମୋର ସବୁବେଳେ ରହିଥିଲା ।

ଦୁଇ ଜଣଙ୍କ ଭାଗକୁ ଖାଇ ନପାରି, ତଣ୍ଟିରେ ନଗଳିଲେ ମଧ୍ୟ ସେ ସବୁଠାରୁ ଖଣ୍ଡେ ବଡ଼ ମାଂସ ଥାଳିରୁ ଉଠେଇ ଦାନ୍ତରେ କାମୁଡ଼ି ଜାଲି ଗ୍ରିପଟେ ବୁଲିବାରେ ଲାଗିଲା । ସେ ହୁଏତ ମନେ ମନେ ଭାବୁଥିଲା "ବନ୍ଧୁପଣିଆ ବନ୍ଧୁରେ ରହୁ, ଏଥର ନିଜ ଖବର ବୁଝିବାକୁ ହେଉ ।"

ଆଲିଶା ନିଜ ସମ୍ପତ୍ତିକୁ ଶେଷରେ ମାଟିରେ ପୋତି ପକାଇ, ପୁଣି ମିନିଟକ ପରେ ମାଂସଟିକୁ ମାଟିରୁ କାଢ଼ି ଦାନ୍ତରେ କାମୁଡ଼ି ଜାଲି ସାରା ବୁଲିବାକୁ ଲାଗିଲା ।

ତିଖନ୍ ଅବିଚଳିତ ଭାବେ ଆଲିଶାର ଗତିବିଧି ଲକ୍ଷ କରୁଥିଲା । ତା'ପରେ ଯେତେବେଳେ ତା ପାଳି ଆସିଲା, ଠିକ୍ ଆଲିଶା ଭଳି ନିଜ ଥାବାରେ ମାଟି ଖୋଳି ଆଲିଶାର ସାଇତା ହୋଇଥିବା ସମ୍ପତ୍ତିକୁ ମାଟିରୁ କାଢ଼ି ଖାଇ ଦେଲା ।

ଦୁହିଁଙ୍କ ମଧ୍ୟରେ ଅତୁଟ ବନ୍ଧୁତ୍ୱ କ୍ରମଶଃ ଗଢ଼ି ଉଠିଲା । ଆମେ ଏସବୁ ଦେଖି ବହୁତ ଖୁସି ହେଉଥିଲୁ । କିନ୍ତୁ ଥରେ ହଠାତ୍ କୁକୁର ବାହୁନିଲା ଭଳି ବାହୁନିବାର ଶବ୍ଦ ଶୁଣିଲି । କିଏ ଏମିତି କରିପାରେ ?

ପରେ ଆଲିଶା କାନ୍ଦୁଥିବାର ଜାଣିବାକୁ ପାଇଲୁ । ଖେଳ ଜମି ଆସିଲାବେଳେ ତିଖନ୍ ତାକୁ ଛାଡ଼ି ଚାଲି ଯାଇଥିବାରୁ ତା'ର ଏ ଅଭିମାନ । ଛୋଟ ମାଙ୍କଡ଼ଟି ଭଳି ତା ବନ୍ଧୁଟି ପଛେ ପଛେ ଜାଲି ଉପରେ ଚଢ଼ି ତା ପିଛା ଧରିବାକୁ ସେ ଚେଷ୍ଟା କରୁଥିଲା । କିନ୍ତୁ ଅଧମିଟରରୁ ବେଶି ଚଢ଼ିବା ତା ପକ୍ଷରେ ସମ୍ଭବ ହେଉ ନଥିଲା । ଫଳରେ ପଡ଼ି ଯାଉଥିଲା । ଏହିଭଳି ବାରମ୍ବାର ଚେଷ୍ଟା କରି ବିଫଳ ହେଲା ।

ତା'ର ଏହି ବିକଳ କାନ୍ଦଣା ଘନ ଘନ ମୋ କାନରେ ଆସି ବାଜିବାକୁ ଲାଗିଲା । ଆଲିଶା ରହୁଥିବା ଜାଲିଘେରା ବାଡ଼କୁ ଡେଇଁବା ପାଇଁ ତିଖନ୍ ଯେଉଁ ଦକ୍ଷତା ହାସଲ କରିଥିଲା, ସେ ଦକ୍ଷତାକୁ ସେ ଆମେ ରହୁଥିବା ଗାଁ ଘର ବାଡ଼କୁ ଡେଇଁବାରେ ଲଗାଇଥିଲା । ତାକୁ ଧରିବା ଆଦୌ ସମ୍ଭବ ହେଲା ନାହିଁ । ଗାଁ ଯାକର ବାରବୁଲା ମାଈ କୁକୁରଙ୍କ ମେଳରେ ସେ ପଡ଼ି ଯାଇଥିଲା । ଚାରିଆଡ଼େ କେଉ କେଉ ଭେଉ ଭେଉ ଶବ୍ଦ କରି ସେମାନେ କମ୍ପଉଥିଲେ । କୁକୁରମାନଙ୍କ ମଧ୍ୟରେ ଝଗଡ଼ା ଲାଗି ଯାଇଥିଲା ।

ବେଳେ ବେଳେ ତିଖନ୍ ଦୁଇ ତିନି ଦିନ ପାଇଁ କେଉଁ ଆଡ଼େ ଉଭେଇ ଯାଉଥିଲା । ଖଣ୍ଡିଆ ଖାବରା ହୋଇ, ପ୍ରତିଥର ନିଜର ବେକବନ୍ଧାକୁ ହଜେଇ, ରୋଗା ଓ ଦୟନୀୟ ଅବସ୍ଥାରେ ଫେରୁଥିଲା ।

ଘରକୁ ଫେରି ତିଖନ୍ ସାଧାରଣତଃ ପେଟେଇ ପେଟେଇ ଜାଲି ବାଟ ଦେଇ ନିଜେ ରହୁଥିବା ଘରକୁ ଗଳି ଯାଉଥିଲା । ଦିନେ ଦିଦିନ ଯାଏ ତା ଖଣ୍ଡିଆ

ହୋଇଥିବା ଜାଗାକୁ ଗ୍ଟି ଗ୍ଟି ପଡ଼ି ରହୁଥିଲା । ଦେହରେ ଆଘାତ ପାଇବା ସଙ୍ଗେ ସଙ୍ଗେ ମନରେ ମଧ୍ୟ ସେ ଆଘାତ ପାଉଥିଲା । କିନ୍ତୁ ପରେ ସବୁକିଛି ପୂର୍ବ ଭଳି ଦୋହରାଇବାରେ ଲାଗୁଥିଲା ।

ସେହି ସବୁ ଦିନରେ ଆଲିଶା କିନ୍ତୁ ଖୁବ୍ ନିସ୍ତେଜ ଓ ଦୁଃଖୀ ମନେ ହେଉଥିଲା । ତା ଆଗ ଚେହେରା ଆଉ ନଥିଲା ।

ଥରେ ବୁଲାବୁଲି କରି ଆସି, କିଛି ନ ଘଟିଲା ଭଳି ଟିଖନ୍ ଜାଲି ଭିତରେ ପହଞ୍ଚିଗଲା । ତାକୁ ପାଇ ଆଲିଶା ଖୁସିରେ ପାଗଳୀ ହୋଇଯିବ ବୋଲି ଆମେ ଭାବୁଥିଲୁ । କିନ୍ତୁ ସେ କିଛି ନ ଦେଖିଲା, ନ ଶୁଣିଲା ଭଳି ବାହାନା କରିବାକୁ ଲାଗିଲା । ବିଚରା ଟିଖନ୍ ବହୁତ ଚେଷ୍ଟାକଲା ଏହି ଛୋଟ ପ୍ରାଣୀଟିକୁ ନିଜ ଆଡ଼କୁ ଆକର୍ଷିତ କରିବାକୁ । କିନ୍ତୁ ସବୁ ଚେଷ୍ଟା ତା'ର ବ୍ୟର୍ଥ ହେଲା । ଆଲିଶା ତା ଆଡ଼କୁ ନ ଗ୍ହିଁଲା ଭଳି ଭଙ୍ଗି କରି, ହାଇଟିଏ ମାରି ଧୀରେ ଧୀରେ ତା ନିଜ ଘରଟି ମଧ୍ୟକୁ ଗ୍ଲିଗଲା ।

ଭୋର ହେଲା କ୍ଷଣି ମୁଁ ଆଲିଶା ପାଇଁ ଥାଳିଆରେ ଖାଇବା ଜିନିଷ ନେଇଗଲି ।

ରାତି ସାରା ଭୋକରେ ଆଉଟି ପାଉଟି ହେଉଥିବା କୋକିଶିଆଳୀଟି ଅଧୈର୍ଯ୍ୟ ହୋଇ ଜାଲି ଗ୍ରିପଟେ ଚକ୍କର କାଟିବାକୁ ଲଗିଲା । ଜାଲି ଭିତରେ ଗୋଡ଼ ଦେଲାକ୍ଷଣି ହସ ଖୁସିଆ ଏକ କୁକୁର ଛୁଆ ଭଳି ସେ ମୋ ଗ୍ରିପଟେ ଡେଇଁବାକୁ ଆରମ୍ଭ କରିଦେଲା । ଧୈର୍ଯ୍ୟ ନଧରି ମୋ ଜାମା ଧଡ଼ିକୁ ଦାନ୍ତରେ ଭିଡ଼ିବାରେ ଲାଗିଲା ।

ମୁଁ ଜାଲି ଭିତର ସଫାକଲା ବେଳେ, ସେ ଖୁବ୍ ଉତ୍ସାହରେ କେତେବେଳେ ଗୋଡ଼ତଳେ ଛନ୍ଦି ହୋଇ ଯାଉଥିଲା ତ କେତେବେଳେ ଜମା ହୋଇଥିବା ଅଳିଆ କୁଟା ଉପରକୁ ଡେଇଁ ପଡ଼ୁଥିଲା । ବିଲେଇ ମୂଷା ଶିକାର କଲା ଭଳି ସେ ମୋ ଗୋଡ଼ ଉପରେ ଡେଇଁବାକୁ ଲାଗିଲା ।

ପାଗ ଭଲ ଥିଲେ, ମୁଁ ଆଲିଶା କାମୁଡ଼ି ଖଣ୍ଡିଆ କରିଥିବା ଉଠା ଟେବୁଲଟିଏ

ଆଉ ଚେୟାରଟିଏ ନେଇ ଜାଲିଘେର ଭିତରେ ପକାଇ କାମ କରି ବସୁଥିଲି ।

ମୁଁ ଗୋଟିଏ ବି ଘଣ୍ଟା ତାଠାରୁ ଦୂରେଇ ରହିବାକୁ ଚାହୁଁନଥିଲି । କାରଣ ଯେତେବେଶି ମୁଁ ତା ସହିତ ମିଶୁଥିଲି ସେତେବେଶି ଆମ ଭିତରେ ଘନିଷ୍ଠତା ବଢ଼ୁଥିଲା ।

ଜାଲିଘେର ଭିତରେ କାମ କରିବାକୁ ମତେ ଭଲ ଲାଗୁଥିଲା । ଆଶ୍ଚର୍ଯ୍ୟ କଥା ହେଲା, ସେ ଜାଲିଘେର ସତେ ଯେମିତି ସମସ୍ତ ଚିନ୍ତାଦକ ଆଉ କୋଳାହଳଠାରୁ ଦୂରେଇ ରହିଛି !

କୋକିଶିଆଳୀଟି ମୋ ଦୃଷ୍ଟି ଆକର୍ଷଣ କରିବା ପାଇଁ କେତେବେଳେ ଟେବୁଲ ଗୋଡ଼ ଉପରକୁ ଡେଇଁ ପଡ଼ୁଥିଲା ତ କେତେବେଳେ ମୋ ଗୋଡ଼ ଉପରକୁ । କିନ୍ତୁ ଏହା ଫଳରେ ମୋ କାମରେ କୌଣସି ଆଞ୍ଚ ଆସୁନଥିଲା । ନିଜ ଚିନ୍ତାରେ ମଗ୍ନ ରହି ମୁଁ ତା ସହିତ ଖେଳୁଥିଲି । ସବୁବେଳେ ମୋତେ ଖୁସି ଲାଗୁଥିଲା ଯେ, ଏ ପୃଥିବୀରେ ଏପରି ଏକ ଜୀବ ଅଛି, ଯାହାକୁ ମୁଁ ସମସ୍ତ ଦୁର୍ଦ୍ଦଶାରୁ ବଞ୍ଚାଇ ପାରିଛି ।

ସେତେବେଳେ ମୋର ଠିକ୍ ଏ ଭଳି ମନେ ହୋଇଥିଲା, କିନ୍ତୁ ମୁଁ ଜାଣି ପାରିନଥିଲି ଯେ, ତାକୁ ମୁଁ କୌଣସି ଆକସ୍ମିକ ଦୁର୍ଘଟଣାରୁ ବଞ୍ଚାଇ ପାରିବିନି । କାରଣ ତା ଭାଗ୍ୟର ଲେଖନକୁ ବା କିଏ ବଦଳାଇ ପାରିବ !..

କେତେବେଳେ କେମିତି ଆଲିଶାକୁ ମୁଁ ସାଙ୍ଗରେ ଧରି ବଣ ଭିତରକୁ ଯାଉଥିଲି । ଛୋଟ ଶିଶୁକୁ ଧରିଲା ଭଳି ତାକୁ ମତେ ପ୍ରାୟ କୋଳରେ ଧରି ନେବାକୁ ପଡ଼ୁଥିଲା । ଜଞ୍ଜିରରେ ବନ୍ଧା ହୋଇ ଚାଲିବାର ଅଭ୍ୟାସ ତା'ର ନଥିଲା । ସିଏ ବି ଏହିଭଳି ବୁଲିବାକୁ ଖୁବ୍ ଭଲ ପାଉଥିଲା । ମାଙ୍କଡ଼ ଭଳି ସେ ଭାରି କୌତୂହଳୀ ଥିଲା । ବଣଟା ମଧ୍ୟ ଥିଲା ବହୁ ଚିତ୍ତାକର୍ଷକ ଜିନିଷରେ ଭରପୂର ।

ଥରେ ଗୋଟିଏ ଘଟଣା ଘଟିଲା । ଘଟଣାଟି ମୋ ମନରେ ଆଲିଶା ପ୍ରତି ସୃଷ୍ଟି କରିଥିଲା ଅକଳନ ଶ୍ରଦ୍ଧା ।

ସବୁଦିନ ଭଳି ଆମେ ବଣକୁ ବୁଲିବାକୁ ଯାଇଥିଲୁ । ସେଦିନଟା ଥିଲା

ଶରତ ଋତୁର ଏକ ମନମରା ଗରମ ଦିନ ପରି । ସୂର୍ଯ୍ୟ ମୁଣ୍ଡ ଉପରେ କିରଣ ଢାଳୁଥାନ୍ତି । ଗ୍ରୀଷ୍ମ ଦିନିଆ ଗାଁ ଘରେ ଛୁଟି କଟଉଥିବା ଲୋକେ ଘରକୁ ଫେରି ଯାଇଥିଲେ । ସେମାନଙ୍କ ଟ୍ରାନ୍‌ଜିଷ୍ଟରର ଘୋଘୋ ଶବ୍ଦରୁ ସତେ ଯେମିତି ବଣ ବିଶ୍ରାମ ନେଉଥିଲା । ମୁଁ ବଣ ଭିତରକୁ ପଡ଼ିଥିବା ସିଧା ସରୁ ରାସ୍ତାରେ ଯାଉଥାଏ । ବାର୍ଚ୍ଚଗଛର ଡାଳ ଭିତର ଦେଇ ସୂର୍ଯ୍ୟ କିରଣ ଝରି ପଡ଼ୁଥାଏ । ଆକାଶଟା ଖୁବ୍ ପରିଷ୍କାର ଆଉ ଚାରିଆଡ଼ ଲାଗୁଥାଏ ଶୂନ୍‌ଶାନ୍ । ହଠାତ୍ ଜଣେ ମହିଳାଙ୍କ ଚିତ୍‌କାର ଶୁଣିବାକୁ ପାଇଲି । ମୁଁ ଚାରି ଆଡ଼କୁ ଚାହିଁଲି । ଗୋଟିଏ ବିରାଟ ବଡ଼ ବାଛୁରୀ ଉଚ୍ଚର ଲୋମଶ ଧଳା କୁକୁରଟିଏ ମୋ ସାମନା ଦେଇ ପଡ଼ିଥିବା ରାସ୍ତା ଆଡ଼କୁ ଚୁପ୍‌ଚାପ୍ ଛୁଟି ଚାଲିଗଲା । କୁକୁରଟା ଥିଲା ଦକ୍ଷିଣ ରୁଷ୍ ଅଞ୍ଚଳର ଆଲ୍‌ସେସିଆନ୍ ଜାତୀୟ ଏକ 'ପାଇରଟ୍' କୁକୁର ।

ଏହି କୁକୁରଟା ସେଓରେ ଭରା ବିରାଟ ବଡ଼ ବଗିଚାଟିକୁ ଜଗୁଥିଲା । ସେ ସେଠି ଥିଲାବେଳେ ଆଖପାଖ ଅଞ୍ଚଳର ପିଲାମାନେ ସେଓ ଗଛଠାରୁ ଦୂରରେ ରହୁଥିଲେ । ଏପରିକି ବଡ଼ ଲୋକମାନେ ଅନ୍ୟର ସେଓ ପ୍ରତି ନଜର ନଦେଉଥିଲେ ମଧ୍ୟ ବାଡ଼ ଆରପଟୁ ସାବଧାନ ସହକାରେ ଦେଖୁଥିଲେ । କାରଣ ବାଡ଼ ସେପଟରେ, ବଡ଼ ବଡ଼ ହଳଦିଆ ଦାନ୍ତବାଲା ଓ ଆଖି ଉପରେ ଧଳା ଲୋମସବୁ ଝୁଲୁଥିବା ସେହି ବିରାଟ ଜନ୍ତୁଟା ଚକ୍କର କାଟୁଥିଲା ।

ସେଇ ଜନ୍ତୁଟା ଆମ ଆଡ଼କୁ ଛୁଟିଆସୁଥିଲା । ଜଣେ ମୋଟୀ ମହିଳା ଦୋହଲି ଦୋହଲି ହାଇହିଲ୍ ଜୋତା ପିନ୍ଧି, ହାତରେ ଜଞ୍ଜିରଟାଏ ହଲେଇ ହଲେଇ ପାଟି କରି କରି ଦୌଡ଼ୁଥିଲେ । କିନ୍ତୁ ତା ଭଳି ଦୌଡ଼ି ନପାରି ପଛରେ ପଡ଼ି ଯାଉଥିଲେ । କୁକୁରଟା ଭୟଙ୍କର ଭାବେ ଆମକୁ ଚାହିଁ ଚୁପ୍ ହୋଇ ଛୁଟିଥିଲା ।

ଆମ ଦୁହିଁଙ୍କ ମଧ୍ୟରେ ଦୂରତ୍ୱ ଖୁବ୍ ଆଶ୍ଚର୍ଯ୍ୟ ଭାବେ କମିଯାଉଥିଲା । ନିଜ ଜାଗାରେ ଛିଡ଼ା ହୋଇ ରହିବା ଅପେକ୍ଷା ଦୌଡ଼ି ପଳାଇବା ବୋକାମି ହୋଇଥାନ୍ତା, ତା ଛଡ଼ା ବିପଜ୍ଜନକ ମଧ୍ୟ । ବରଂ ତା ମାଲିକାଣୀ ଆସିଲା

ପର୍ଯ୍ୟନ୍ତ ତାକୁ କେମିତି ବହଲେଇ ରଖି ପାରିଲେ ରକ୍ଷା । ସବୁଠାରୁ ବଡ଼ କଥା ହେଲା ନିଜ ମନର ଭୟକୁ ପ୍ରକାଶ ନ କରିବା ।

ଆଲିଶାର ଅବଶ୍ୟ ଯଥେଷ୍ଟ ସମୟ ଥିଲା ସେଠୁ ପଳେଇବା ପାଇଁ । ସେ ତାହାଳ କୁକୁରର ଶିକାର ନ ହେଉ ବୋଲି ମୁଁ ଚାହୁଁଥିଲି । ତେଣୁ ତାକୁ ଅବିଳମ୍ବେ ଛାଡ଼ି ଦେବା ଦରକାର ଥିଲା । ମୁଁ ପଛେ ଜୀବନରେ ଆଉ କେବେ ତାକୁ ଦେଖିବାକୁ ନ ପାଏ, କିନ୍ତୁ ସେ କେମିତି ହେଲେ ବଞ୍ଚିଯାଉ ବୋଲି ମୁଁ ଠିକ୍ କରିି ନେଲି ।

ତେଣୁ ମୁଁ ଆଲିଶାକୁ ତଳେ ଛାଡ଼ିଦେଲି । ଆଖି ପିଛୁଳାକେ ସେ ବୁଦା ଭିତରକୁ ଛୁଟି ପଳାଇଲା । ତା ପରେ ଆଉ ତାକୁ ଧରେ କିଏ !

କୁକୁର ହୁଏତ ତାକୁ ଦେଖି ପାରିନଥିଲା କିମ୍ବା ମୁଁ ତା ପାଇଁ ଏକ ଅଧିକ ଆକର୍ଷଣୀୟ ଶିକାର ବୋଲି ଭାବି ସେ ତା ଗତି ବଦଳାଇଲା ନାହିଁ । ଭୁକାଭୁକି ନକରି ନିରବରେ ସିଧାସଳଖ ମୋ ଆଡ଼କୁ ମାଡ଼ି ଆସିଲା, ଯାହାକି ମୋ ପକ୍ଷରେ ଥିଲା ବେଶ୍ ଭୟଙ୍କର ।

ମୁଁ ଗୋଟିଏ ମୋଟା ପୁରୁଣା ବାର୍ଚ୍ଚଗଛକୁ ପିଠିକରି ଛିଡ଼ା ହୋଇଗଲି । କୁକୁର ଆଉ ମୋ ଭିତରେ ଦୂରତ୍ୱ ଦୁଇ ମିଟରରୁ ବେଶି ନଥିଲା । ଇଚ୍ଛା ନଥିଲେ ବି ଏକ ଅପ୍ରୀତିକର ମିଠା ଗଳାରେ ଆଦର କରି ମୁଁ ତାକୁ କହିଲି, "ସୁନାଟା ପରା, ଦୟାକରି ମତେ କାମୁଡ଼ିବୁନି !"

କୁକୁରଟା ଠିଆ ହୋଇଗଲା । ସେ ଧନ୍ଦି ହୋଇଯିବା ଦେଖି ମୁଁ ଆଉ ଟିକିଏ ସାହସ ପାଇଗଲି । ଟିକେ ଅଧିକ ଦୃଢ଼ ଗଳାରେ କହିଲି, "କେଡ଼େ ସୁନ୍ଦର, ଗୁଳକ, ଦୟାଳୁ କୁକୁରଟିଏ ତୁ !"

ଏହି ମୁହୂର୍ତ୍ତରେ ମୁଁ ଦେଖିଲି, କୁକୁରଟି ମୋ ଗଳାକୁ ଧରିବା ପାଇଁ ଡେଇଁବାକୁ ପ୍ରସ୍ତୁତ ହେଉଛି । ପ୍ରଥମ ଥର ବେଶି ଉପରକୁ ସେ ଡେଇଁଲା ନାହିଁ । ମୋର ମନେ ପଡ଼ୁନି ତା'ର ଦ୍ୱିତୀୟ ଡିଆଁଟିକୁ ମୁଁ କେମିତି ଏଡ଼େଇଥିଲି ।

ମୁଁ ତୃତୀୟ ଥର ଆକ୍ରମଣକୁ ଭୟଭୀତ ହୋଇ ଅପେକ୍ଷା କରୁଥିଲି । କ୍ଷିପ୍ରଭାବେ ଧାଇଁ ଆସୁଥିବା ତା'ର ମାଲିକାଣୀକୁ କଣେଇକି ଚାହିଁ ରହିଲି । ଭୟ ହୁଏତ ସେ ମହିଳାଙ୍କୁ ଶକ୍ତି ଯୋଗାଇଥିଲା, କିନ୍ତୁ ସେ ଶୀଘ୍ର ପହଞ୍ଚି ପାରିଲେ ନାହିଁ । ପହଞ୍ଚିଥିଲେ ବା କ'ଣ ହୋଇଥାନ୍ତା ! ସେ କ'ଣ ତାଙ୍କ ଭୟଙ୍କର କୁକୁରକୁ ସମ୍ଭାଳି ପାରିଥାନ୍ତେ ?

ଡାହାଳ କୁକୁରଟା ତୃତୀୟ ଥର ଡେଇଁବାକୁ ପ୍ରସ୍ତୁତ ହେଲାବେଳେ ହଠାତ୍ ଗର୍ଜି ଉଠିଲା । ମୁଁ ମୋ ଆଖିକୁ ବିଶ୍ୱାସ କରି ପାରିଲି ନାହିଁ – ମୋ ଛୋଟ ସାହସୀ କୋକିଶିଆଳୀଟି କୁଆଡ଼ୁ ଧାଇଁ ଆସି ବୁଲ୍‌ଡଗ୍ ଭଳି ତା ପଛ ଗୋଡ଼ଟିକୁ ଦାନ୍ତରେ କାମୁଡ଼ି ଧରିଲା ।

କୁକୁରଟି ବିଜୁଳି ଭଳି ପଛକୁ ବୁଲି ପଡ଼ିଲା । ତା ମୁନିଆ ଦାନ୍ତଗୁଡ଼ାକ ଅଯଥାରେ କଡ଼ କଡ଼ କରି ଉଠିଲା । ଆଲିଶା ସେତେବେଳକୁ ନିଜ ଲୁମଲୁମିଆ ଲାଙ୍ଗୁଡ଼କୁ ହଲେଇ ହଲେଇ ଡିଆଁଟିଏ ମାରି ଦେଇଥାଏ । ଏଭଳି କଲାବେଳେ ତା ଦେହର ଲମ୍ବ ଅଧା ହୋଇଯାଇଥିଲା, ଫଳରେ ତାକୁ ଧରିବା ଦୁଇଗୁଣ କଷ୍ଟକର ବ୍ୟାପାର ଥିଲା । ଅବଶ୍ୟ କୁକୁର ମୋ କଥା ଭୁଲି ଯାଇ ଆଲିଶା ପିଛା ଧରିଲା ।

ମୁଁ ଉଶ୍ୱାସରେ ଦୀର୍ଘ ନିଶ୍ୱାସଟିଏ ମାରି ଚଲାବାଟରେ ଶୀଘ୍ର ଘରକୁ ଛୁଟିଲି । ଆଲିଶା ସହଜରେ ତା'ଠାରୁ ନିଜକୁ ରକ୍ଷା କରି ପାରିବ, ଏଥିରେ ମୋର କୌଣସି ସନ୍ଦେହ ନଥିଲା । କିନ୍ତୁ ସେ କ'ଣ ଆଉ ଘରକୁ ଫେରିବ ?

ମୁଁ ଏକମୁହାଁ ହୋଇ ପ୍ରାଣ ବିକଳରେ ଦଉଡ଼ି ଜାଲିଘେର ପାଖରେ ପହଞ୍ଚିଗଲି । ଦେଖିଲି, ଆଲିଶା ତା ଘର ଛାତ ଉପରେ ଚୁପ୍‌ଚାପ୍ କଡ଼ ମାଡ଼ି ଶୋଇଛି । କେବଳ ଦେହର ଗୋଟିଏ ଅଂଶ ଉପରକୁ ଉଠୁଥାଏ ପଡ଼ୁଥାଏ । ସେଥିରୁ ମନେ ହେଉଥାଏ ସେ ଧଇଁସଇଁ ହୋଇ ପଡ଼ିଛି । ତା'ର ଅଳସୁଆ ଭଙ୍ଗି, ଅଧବୁଜା ଆଖି ସତେ ଯେମିତି କହୁଛି, "କ'ଣ ତମେ ଭାବିଛ କି ?

ମୁଁ ତ କେବଳ ଏକ ଆତ୍ମସମ୍ମାନ ଥିବା କୋକିଶିଆଳୀର ଦାୟିତ୍ୱ ପାଳନ କରିଛି । ଆମ ଷ୍ଟେପୀ ଓ ମରୁଭୂମି ଅଞ୍ଚଳରେ ବନ୍ଧୁକୁ ବିପଦରେ ଛାଡ଼ି ଚାଲିଯିବା ନିଷେଧ !"

କ୍ରମଶଃ ଅକ୍ଟୋବର ମାସ ଆସିଗଲା । ଆଲିଶାକୁ ନେଇ କ'ଣ କରିବୁ, କିଛି ଠିକ୍ ନ କରିପାରି ଆମେ ସେ ପର୍ଯ୍ୟନ୍ତ ଗ୍ରୀଷ୍ମକାଳୀନ ଗାଁ ଘରଟି ଛାଡ଼ି ନଥିଲୁ । କିନ୍ତୁ ଭଲ କରି ଜାଣିଥିଲୁ ଯେ, ସହରରେ ଆଲିଶା ସହିତ ଏକାଠି ରହିବା ଆଦୌ ସମ୍ଭବ ନୁହେଁ । ସେ ସମସ୍ୟାର ସମାଧାନ ଶେଷରେ ଆପେ ଆପେ ହେଲା ।

ଅକ୍ଟୋବର ଶେଷରେ ମୁଁ ହୃଦୟକୁ ପଥର କରି ମୋର ସବୁ ପଶୁମାନଙ୍କୁ, ଆମେ ଯାହାଙ୍କ ଘରେ ରହିଥିଲୁ, ସେଇ ମାନ୍ୟା ଆଈଙ୍କ ଦାୟିତ୍ୱରେ ଛାଡ଼ି ବାହାରକୁ କାମରେ ଚାଲିଗଲି । ବୁଢ଼ୀ କିନ୍ତୁ ଆଲିଶାକୁ ସହି ପାରୁନଥିଲେ । ସେ ଭାବୁଥିଲେ, ଯାହାଠାରୁ କିଛି ଉପକାର ମିଳିବ ନାହିଁ, ତାକୁ ଅଯଥାରେ ରଖି ଲାଭ କ'ଣ ?

ତିନି ସପ୍ତାହ ପରେ ଫେରି ମୁଁ ଦେଖିଲି, ଆଲିଶାର ଘର ଖାଲି ପଡ଼ିଛି । ମୁଁ ମାନ୍ୟା ଆଈଙ୍କ ପାଖକୁ ଦୌଡ଼ିଗଲି । ସେ ମତେ ଦେଖି ଖୁସି ହୋଇ ଯାଇ ଏକ ଭାଷଣ ଦେବାରେ ଲାଗି ପଡ଼ିଲେ, "ତୁମେ ଯିବାର ଦୁଇଦିନ ପରେ କୋକିଶିଆଳୀଟି ଚମ୍ପଟ ମାରିଛି । ସେଦିନ ସକାଳେ ଖାଦ୍ୟ ନେଇ ଆସି ତା ପାଖରେ ପହଞ୍ଚି ଭାବୁଛି, ହେଇ ସେ ଏଇକ୍ଷଣି ମୋ ଆଡ଼କୁ ଖିଙ୍କାରି ହୋଇ ମାଡ଼ି ଆସିବ । ମୁଁ ତାକୁ ଖାଇବାକୁ ଦେବି, ଅଥଚ ସେ ବଦ୍‌ମାସ ମୋତେ ଏହିପରି ଧନ୍ୟବାଦ ଜଣାଇବ ! ସେ କିନ୍ତୁ ଧାଇଁ ଆସିଲା ନାହିଁ । ମୁଁ ଦେଖିଲି ତା ଜାଲି କବାଟ ଅଳ୍ପ ଖୋଲା ଅଛି । ଗତ ରାତିରେ ମୁଁ ବୋଧହୁଏ ଶିକୁଳି ଲଗାଇବାକୁ ଭୁଲି ଯାଇଥିଲି । ଆଲିଶା ତ କମ୍ ଚତୁରୀ ନୁହଁ, ତୁମେ ଜାଣିଛ । ଏବେ ମୁଣ୍ଡ ବାଡ଼େଇଲେ କ'ଣ ହେବ ? ଖୁସି ହେବା କଥା, ପଳେଇଯାଇନି

ଯେ , ବରଂ ତୁମକୁ ଖଲାସ କରି ଦେଇଛି । କେତେ ତୁମେ ହଇରାଣ ହେଉଥିଲ ତା ପାଇଁ !”

ଆଲିଶା ଉଭାନ୍ ହେବାର କୋଡ଼ିଏ ଦିନରୁ ବେଶି ହୋଇଗଲାଣି । ମୋର ଏଥିରେ ସନ୍ଦେହ ନଥିଲା ଯେ , ଯଦି ସେ ବିପଦରେ ପଡ଼ି ପ୍ରାଣ ହରେଇ ନଥିବ ତେବେ ଥରେ ନୁହେଁ ଅନେକ ଥର ସେ ଇତି ମଧ୍ୟରେ ଘରକୁ ଫେରିଥିବ । କିନ୍ତୁ ଘରେ ବା ମାନ୍ୟା ଆଈ ଛଡ଼ା ଆଉ କିଏ ଥିଲା ?

ଯେତେଦୂର ସମ୍ଭବ , ହୁଏତ ତା'ର ପ୍ରଥମ ଦିନର ସ୍ୱାଧୀନତା ତା ଜୀବନର ଶେଷ ଦିନରେ ପରିଣତ ହୋଇଥିଲା । ସେ ଯେଉଁ ଜଗତରେ ଗୋଡ଼ ଦେଇଥିଲା , ସେ ଜଗତ ପାଇଁ ସେ ଥିଲା ଅତିବିଶ୍ୱାସୀ । ସେଠି କୁକୁର କିମ୍ବା ଶିକାରୀ ତାକୁ ଛାଡ଼ି ଦେବା କଥା ନୁହଁ । ସେ ଯାହା ହେଉ , ଆଲିଶା କିନ୍ତୁ ଶିକାର କରି କିପରି ଖାଦ୍ୟ ସଂଗ୍ରହ କରିବାକୁ ହୁଏ ଜାଣି ନଥିଲା ।

ବେଶି କିଛି ଆଶା ନକରି , ମୁଁ ମାଂସ ଖଣ୍ଡେ ତା ଘର ଛାତ ଉପରେ ରଖିଦେଲି । ସକାଳ ପର୍ଯ୍ୟନ୍ତ ମାଂସ ଖଣ୍ଡକ ସେହି ଭଳି ସେଇଠି ପଡ଼ି ରହିଥିଲା ।

ଦ୍ୱିତୀୟ ଦିନ ମାଂସ ଖଣ୍ଡକ ସେଠି ଆଉ ନଥିଲା । କିନ୍ତୁ ଆଲିଶା ଘରର ପଛପଟ କାଦୁଅରେ ବିଲେଇର ପାଦଚିହ୍ନସବୁ ଦେଖିବାକୁ ପାଇଲି ।

ତା'ପରେ ଆମେ ଫେରିଗଲୁ ସହରକୁ ।

ଯିବା ପୂର୍ବରୁ , ଯାହା ହେଉ ନା କାହିଁକି , ମୁଁ ମାନ୍ୟା ଆଈଙ୍କୁ ଅନୁରୋଧ କଲି , ଆଲିଶା ଘର ଉପରେ ତା ପାଇଁ କିଛି କିଛି ଖାଦ୍ୟ ରଖିବାକୁ । ଯଦି ବୁଢ଼ୀ ସତରେ ମୋ ଅନୁରୋଧ ପୂରଣ କରିଥିବେ ତେବେ ଗ୍ରୀଷ୍ମ କାଳରେ ଗାଁରେ ବାସ କରୁଥିବା ଲୋକଙ୍କ ଘରୁ ତଡ଼ା ଖାଇଥିବା କିଛି ବାରବୁଲା ବିଲେଇଙ୍କୁ ପୋଷିବା ହିଁ ସାର ହୋଇଥିବ ।

କିଛି ଦିନ ପରେ ମୁଁ ପୁଣି କାମରେ ସହର ବାହାରକୁ ଚାଲିଗଲି । ଫେରି ଆସି ଶୀତ କାଳଟା ରହିଲି ସହରରେ । ମାର୍ଚ୍ଚ ମାସ ଶେଷ

ବେଳକୁ ମାନ୍ୟା ଆଇଙ୍କୁ ଦେଖା କରିବାକୁ ତାଙ୍କ ଗ୍ରୀଷ୍ମକାଳୀନ ଗାଁ ଘରକୁ ଆସିଲି ।

ସେ ଦିନଟି ବସନ୍ତକାଳର ଏକ ଉଜ୍ଜ୍ୱଳ ଦିନ ଥିଲା । ମୋ ମନର ସ୍ମୃତିସବୁ ଧୀରେ ଧୀରେ କ୍ଷୀଣ ହୋଇ ଆସିଥାଏ । ଶେଷରେ ସମୟର ସ୍ରୋତରେ ସ୍ମୃତି ସବୁ ଲିଭି ଲିଭି ଯାଆନ୍ତି । ସେ ଯାହାହେଉ ମୁଁ ଚେଷ୍ଟା କରୁଥିଲି ଜାଲିଘେର ପାଖକୁ ନ ଯିବାକୁ ।

ସେଦିନ କିନ୍ତୁ ରାତିରେ ମୁଁ ଆଲିଶାକୁ ସ୍ୱପ୍ନରେ ଦେଖିଲି । ଝିଣ୍ଟିକା ଭଳି ଏକ କ୍ଷୀଣ ଚେଁ ଚେଁ ଶବ୍ଦ ଶୁଣି ମୁଁ ଉଠି ପଡ଼ିଲି । ସତେ ଯେମିତି ସେଥିରୁ ଆନନ୍ଦମିଶା ବିସ୍ମୟ ପ୍ରକାଶ ପାଉଥିଲା ।

ମୁଁ ବତୀ ଜଳେଇଲି । କିଛି ସମୟ ପାଇଁ ବହି ଖଣ୍ଡେ ପଢ଼ି, ପୁଣି ଶୋଇଲି । ସକାଳେ ତରଳୁଥିବା ବରଫ ଉପରେ ସରୁ ଜଞ୍ଜିର ଭଳି ପଡ଼ିଥିବା ପାଦଚିହ୍ନ ସବୁ ଦେଖିଲି । ମୁଁ ଶୋଇଥିବା ଖଟ ପାଖ ଝରକା ପର୍ଯ୍ୟନ୍ତ ଚିହ୍ନଗୁଡ଼ିକ ଲମ୍ବିଥାଏ । ମୋ ଛାତି ଭିତରଟା ଦକ୍ ଦକ୍ କରି ଉଠିଲା । ଛୋଟ ଛୋଟ ପାଞ୍ଚ ଆଙ୍ଗୁଳିଆ ଚିହ୍ନସବୁ, ଆଲିଶାର ପାଦଚିହ୍ନ ସହିତ ମିଶି ଯାଉଥିଲା ।

ସତେ କ'ଣ ଆଲିଶା ବଞ୍ଚିଥିଲା ? ସତେ କ'ଣ ତା'ର ମାନସ ପଟର ଅସ୍ପଷ୍ଟ ସ୍ମୃତି ବିଗ୍ରରୀକୁ ମାନ୍ୟା ଆଇଙ୍କ ଘର ପର୍ଯ୍ୟନ୍ତ ନେଇ ଆସିଥିଲା ମୁଁ ଯେତେବେଳେ ସେଠି ଥିଲି ?

ହୁଏତ, ଆଉ କୌଣସି ପଶୁର ପାଦଚିହ୍ନ ସେଠି ପଡ଼ିଥିଲା ନା କ'ଣ ? ଘରକୁ ଲଗି ବଣଟିଏ ଥିଲା । ସତରେ ଆଉ କାହାର ପାଦଚିହ୍ନ ହୋଇ ଥିଲେ ମୁଁ ଖୁସି ହେବି । ଭାବିଲେ ଦୁଃଖ ଲଗେ ଯେ, ଜୀବଟିଏ ଚିରକାଳ ପାଇଁ ନିଃସଙ୍ଗତା ଭିତରେ କେଉଁଠି ଘୂରି ବୁଲୁଛି, ଯାହାକୁ ମୋ ଛଡ଼ା ଆଉ କେହି ଗ୍ରହାନ୍ତି ନାହିଁ । ଏବଂ ଶେଷକୁ ମୁଁ ବି ତାକୁ ହରେଇ ବସିଲି । ମୁଁ ଅବଶ୍ୟ ସେଥିପାଇଁ ଦାୟୀ, କାରଣ ମୁଁ ତାକୁ ଭଲ ପାଉଥିଲି, କିନ୍ତୁ ତାକୁ ରକ୍ଷା କରି ପାରିଲିନି ।

ଆଲିଶା ... କେଉଁଠୁ ଆସିଥିଲା, କେଉଁଠିକୁ ଚାଲିଗଲା, କେହି ଜାଣନ୍ତି ନାହିଁ । ସେହି ମାର୍ଚ୍ଚ ମାସ ରାତିରେ କିଏ ତା ପାଦଚିହ୍ନ ସେହି ତରଳୁଥିବା ବରଫ ଉପରେ ଆଙ୍କି ଯାଇଥିଲା, ଏ ବିଷୟରେ ମଧ୍ୟ ମୁଁ କେବେହେଲେ ଜାଣିବାକୁ ପାଇବିନି ।

ନା, ନା କେବେ ନୁହେଁ !



## ପାଠକମାନଙ୍କ ପ୍ରତି

ଏହି ପୁସ୍ତକର ଅନୁବାଦ ଏବଂ ଅଙ୍ଗସଜ୍ଜା ବିଷୟରେ ଆପଣମାନଙ୍କର ମତାମତ ଜଣାଇଲେ "ରାଦୁଗା" ପ୍ରକାଶନ ବାଧିତ ହେବ । ଅନ୍ୟାନ୍ୟ ପରାମର୍ଶ ମଧ୍ୟ ଜଣାଇବାକୁ ଅନୁରୋଧ ।

ଆମର ଠିକଣା "ରାଦୁଗା" ପ୍ରକାଶନ, ୧୭, ଜୁବଭ୍‌ସ୍କି ବୁଲ୍‌ଭାର, ମସ୍କୋ, ସୋଭିଏତ୍ ୟୁନିଅନ୍ ।

